

# ଯେତେ ଦୂର ସେତେ ପାଖ

ସହଦେବ ସାହୁ

# ଯେତେ ଦୂର ସେତେ ପାଖ

( ଦୂର ସଞ୍ଚାର ବା ଟେଲି କମ୍ୟୁନିକେସନ-
ବିଜ୍ଞାନ କାହାଣୀ )

ଲେଖକ :
ଶ୍ରୀ ସହଦେବ ସାହୁ, ଆଇ. ଏ. ଏସ୍.



ଓଡ଼ିଶା ବୁକ୍ ଷ୍ଟୋର

ଯେତେ ଦୂର ସେତେ ପାଖ
( ଦୂରସଞ୍ଚାର ବା ଟେଲିକମ୍ୟୁନିକେସନ )

ଲେଖକ :
ଶ୍ରୀ ସହଦେବ ସାହୁ, ଆଇ: ଏ: ଏସ୍:

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ : ୧୯୮୯

ମୁଦ୍ରଣ :
ମା' ସନ୍ତୋଷୀ ପ୍ରେସ୍
କଟକ-୧

ମୂଲ୍ୟ : ଛଅଟଙ୍କା ମାତ୍ର

JETE DURA
SETE PAKHA

By
Sahadev Sahoo, I. A. S

Published by
Gobinda Charan Patra
Orissa Book Store
Binod Behari, Cuttack-2

1st Edition-1989

Printed at
Maa' Santoshi Press
Kazibazar, Cuttack-1

Price : Rs. 6-00

# ଦୂର ସଞ୍ଚାର ବା ଟେଲି ଯୋଗାଯୋଗ

ଗାଁ ଗଣ୍ଡାରେ ବହୁତ ଲୋକ । ସହରରେ ବି ବହୁତ ଲୋକ । ସମସ୍ତେ ଏକାଠି ରହନ୍ତି । ଜଣେ ଗୋଟିଏ ରକମର କାମ କଲା ତ ଆଉ ଜଣେ ଆଉ ଗୋଟିଏ ରକମ କାମ କଲା । ସମସ୍ତଙ୍କୁ ନେଇ ସମାଜ ଗଢ଼ା । ସମସ୍ତେ ସମସ୍ତଙ୍କ ଉପରେ ନିର୍ଭର କରନ୍ତି । ଅର୍ଥାତ୍ ଯୋଗାଯୋଗ ରଖନ୍ତି ।

ଏହାଛଡ଼ା ଘର ଅଛି, ପରିବାର ଅଛି । ବାପା, ମା, ପିଲା ଏମାନେ ପରିବାରର ଲୋକ । ପରିବାରରୁ କେହି ବାହାରକୁ ଗଲେ, ଅନ୍ୟମାନେ ତା ଖବର ରଖନ୍ତି । ଗୋଟିଏ ଘର ଆଉ ଗୋଟିଏ ଘରୁ କିଛି ଦରକାର କଲେ, ସେ ଘରୁ ଖବର ନିଏ । ଏମିତି ଖବର ନେବା ଦେବାକୁ ଯୋଗାଯୋଗ କୁହାଯାଏ ।

ମୁହାଁମୁହିଁ କଥାବାର୍ତ୍ତା ଗୋଟିଏ ପ୍ରକାରର ଯୋଗା-ଯୋଗ । ମୁହାଁମୁହିଁ ନ ହୋଇ ଦୂରରୁ ବି ଯୋଗାଯୋଗ ରଖି ହେବ । କିମିତି ? ହାତରେ, ଆଖିରେ ଠାର ବା ଇଙ୍ଗିତ ଦେଇ । ଏଥିଲାଗି ଆଖିକୁ ଦିଶୁଥିବା ଦରକାର । କଥା ଶୁଭିବ ନାହିଁ, ଆଖିକୁ ଦିଶିବ ନାହିଁ—ଏମିତି ଦୂରରୁ ଖବର କିମିତି ରଖିବା ?

ଚିଠି ଲେଖିବା । ଯାହାକୁ ଲେଖିବା ସିଏ ଉତ୍ତର ଦେବ । ତା ଚିଠି, ଆମ ଚିଠି ଡାକଘର ବାଟେ ଯିବାଆସିବା

କରିବ । କେହି ସେଆଡ଼େ ଯାଉଥିଲେ ଆମେ ତା ହାତରେ ଚିଠି ପଠାଇଦେଉ । କିନ୍ତୁ ସେଥିପାଇଁ ଅପେକ୍ଷା କରିବାକୁ ପଡ଼ିବ, କିଏ କେତେବେଳେ ଯିବ ତା ହାତରେ ଚିଠି ପଠାଇବା । କିନ୍ତୁ ଡାକଘର ସବୁଦିନେ ଆମ ଚିଠି ନେଇଯିବ । ଏଥିଲାଗି ମାସୁଲ ଦେବାକୁ ପଡ଼େ ।




ବହୁତ ଦୂରକୁ ଚିଠି ପଠାଇଲେ ସମୟ ଲାଗିବ । କଟକରୁ ଭୁବନେଶ୍ୱର ଦିନେ ନେବ । କଟକରୁ କଲିକତା ତିନି ଦିନ ନେବ । କଟକରୁ ବିଲାତ ପଠାଇଲେ ବହୁତ ଦିନ ଲାଗିବ । ଉଡ଼ାଜାହାଜରେ ପନ୍ଦର ଦିନ ତ ପାଣି ଜାହାଜରେ ତିନି ମାସ । କଟକରୁ ସଡ଼କରେ କଲିକତା ଯିବ । କଲିକତାରେ ଅଟକି ରହିବ—ଦିନେ ଜାହାଜ କି ଉଡ଼ାଜାହାଜରେ ସବୁ ଚିଠି ପୁଡ଼ିଆ ବନ୍ଧା ହୋଇ ପଠାହେବ । ଡାକଘର ଏଥିଲାଗି ଜାହାଜ କମ୍ପାନୀକୁ ପଇସା

ଦିଏ । ବାଲ୍ଡରେ ଚାଠି ପହଞ୍ଚିଲା ପରେ ପୁଣି ସଡ଼କ ଧରିବ, ଠିକଣାରେ ପହଞ୍ଚିବ ।

ଯାହାର ଜରୁରୀ ଦରକାର ଥିବ ସେ ଏତେଦିନ ଅପେକ୍ଷା କରିବ କି ? ତାଛଡ଼ା, ଆଜିକାଲି ଲୋକେ ଅଧୀର ହୋଇ ପଡ଼ୁଛନ୍ତି । ଜଲ୍‌ଦି ଜଲ୍‌ଦି ଖବର ଚାହୁଁଛନ୍ତି । ମୋ ପିଲାଟା କିମିତି ପହଞ୍ଚିଲା ? ଭାଇଟା ସେ ଦିନୁ ଗଲାଣି, କିମିତି ଅଛି ? ବେମାର ଦେଖାଇବାକୁ ବାପା ଦିଲ୍ଲୀ ଯାଇଛନ୍ତି, ବେମାର କମୁଛି କି ନାହିଁ ? ଏସବୁ ଖବର ସାଙ୍ଗେ ସାଙ୍ଗେ ଦରକାର । ଡେରି ହେଲେ ମନରେ ଖଟକା ପଶେ । ଚିନ୍ତା ଆସେ ।

ଖୁବ୍ ଶୀଘ୍ର ଖବର ପାଇବା ପାଇଁ ଯେଉଁ ବ୍ୟବସ୍ଥା ଅଛି ତାକୁ ଇଂରାଜୀରେ ଟେଲିକମ୍ୟୁନିକେସନ କହନ୍ତି । ଖବର କାଗଜରେ ଟେଲିଯୋଗାଯୋଗ ଲେଖା ଥିବାର ଆମେ ପଢ଼ୁ । 'ଟେଲି'ର ମାନେ ଦୂର ଯୋଗାଯୋଗ ମାନେ ଖବର ନେବା ଦେବା । ଏହି ବ୍ୟବସ୍ଥାରେ ଖବର ଦୂର ଦୂରାନ୍ତକୁ ପଠାଯାଏ ବୋଲି ଆମେ ଏଥିକୁ ଦୂର ସଞ୍ଚାର କହୁଥାଉ । ଚାରିଆଡ଼େ ବ୍ୟାପି ଯିବାକୁ ସଞ୍ଚାର କୁହାଯାଏ ତ ! ତେଣୁ ଏମିତି ନାଁ ।

## ବିଜୁଳି କଥା କହିଲା

ତାରରେ ବିଜୁଳି ଆସେ । ବଲ୍‌ବ ବା ଡ଼ିମ୍‌ଟିଏ ଓହଳାଇ ଦେଲେ ସେଟା ଜଳେ । ବିଜୁଳି ତାରକୁ ଛୁଇଁ ଦେଲେ ଝଟ୍ କା ଝଟ୍‌କା ଲାଗେ ।

ବିଜୁଳି ଗୋଟିଏ ଶକ୍ତି । ଉମ୍ଟିଏ ଜଳିଲେ ଯେଉଁ ଆଲୁଅ ବାହାରେ ତାହା ବି ଗୋଟିଏ ଶକ୍ତି । ଠୋ ଠୋ ଶବ୍ଦଟି ଗୋଟିଏ ଶକ୍ତି । ଗାଡ଼ି ଚାଲିବା ଗୋଟିଏ ଶକ୍ତି । ବିଜ୍ଞାନ କହେ, ଗୋଟିଏ ଶକ୍ତିରୁ ଆଉ ଗୋଟିଏ ଶକ୍ତି ହେବା ସହଜ କଥା । ଖାଲି ଯନ୍ତ୍ର ବଦଳାଇବା ଦରକାର । ବିଜୁଳି ଚାଲିଲେ ପଙ୍ଖା ଘୂରେ । ଘୂରିବା ଗୋଟିଏ ଯାନ୍ତ୍ରିକ ଶକ୍ତି । ଘୂରିବା ପାଇଁ ଚୁମ୍ବକ ଦରକାର । ଦୁଇ ପାଖରେ ଚୁମ୍ବକ ଥିବ । ଗୋଟିଏ ପାଖ ଚୁମ୍ବକ ଟାଣୁଥିବା ବେଳେ ଅନ୍ୟପାଖ ଚୁମ୍ବକ ଅକାମୀ ଥିବ । ତେଣୁ ଗୋଟିଏ ପାଖ ଟାଣି ସାରିବା ପରେ ଅନ୍ୟ ପାଖ ଆଉଥରେ ଟାଣିନେବ । ଫଳରେ ମଟର ବା ପଙ୍ଖାକଳ ଘୂରିବ । ବିଜୁଳିରୁ ଚୁମ୍ବକ ଆସେ । ଚୁମ୍ବକ ପଙ୍ଖା ବୁଲାଏ ।

ବିଜୁଳିରୁ ଚୁମ୍ବକ ହୁଏ । ଏହି ଚୁମ୍ବକ ବହୁତ କାମ କରେ । ଶବ୍ଦ ତିଆରି ଏମିତି ଗୋଟିଏ କାମ । ଆମେ କିମିତି ଶବ୍ଦ ଶୁଣୁ, ପ୍ରଥମେ ବୁଝିବା କଥା । ପବନରେ ଶବ୍ଦ ତରଙ୍ଗ ତିଆରି କରେ । ଯେମିତି ପୋଖରୀରେ ଢେଲାଟିଏ ପକାଇଲେ ପାଣିରେ ତରଙ୍ଗ ହୁଏ ସେଇମିତି କଥା କହିଲେ ପବନରେ ଆମେ ତରଙ୍ଗ ବା ଢେଉ କରୁ । ପାଣିରେ ଢେଲା ପଡ଼ିବା ଜାଗାରୁ ଢେଉ ଚାରିଆଡ଼କୁ ମାଡ଼ିଯାଏ; ଶେଷରେ କୂଳରେ ବାଜେ । ସେଇମିତି ଶବ୍ଦର ଢେଉ ଚାରିଆଡ଼େ ଖେଳିଯାଏ । ବହୁତ ଦୂର ଗଲେ କ୍ଷୀଣ ହୁଏ ସିନା, ଲିଭିଯାଏ ନାହିଁ ।

ଆମ ପାଟିରୁ କଥା ବାହାରିଲେ, ତାହା ପବନ ଆକାରରେ ବାହାରେ । ଏହି ପବନ ମୁହଁ ପାଖ ପବନକୁ

ଠେଲିଦିଏ । ଜୋର କଥା ଜୋରରେ, ଧୀର କଥା ଧୀରେ ଠେଲେ । ଏହି ଠେଲିବାରେ ଢେଉ ହୁଏ । ଢେଉ ଯାଇ




[ଆମ କାନ କେମିତି ଶୁଣେ]

କାନ ଗାତରେ ପଶେ । ଗାତରେ ଥିବା ପବନ ଠେଲି ହୁଏ । ଏହି ଠେଲି ହେବାକୁ ପବନର ଚାପ କୁହାଯାଏ । ଚାପ ଅନୁଯାୟୀ କାନ ପରଦା କମ ବେଶି ଚାପି ହୁଏ । ଏମିତି କମବେଶୀ ଚାପ ହେବାକୁ କମ୍ପନ କୁହାଯାଏ । ଆମ ମୁଣ୍ଡ ଏହି କମ୍ପନକୁ ପଢ଼ିପାରେ; ଆମେ କଥାଟା ବୁଝିପାରୁ ।

ଟେଲିଫୋନ ଭିତରେ ଏମିତି କମ୍ପନ ତିଆରି ହୁଏ । ଫୋନର ଶୁଣିବା ଯନ୍ତ୍ରରେ ଗୋଟିଏ ପତଳା ପରଦା ଅଛି । ଦେଖିବାକୁ ଚମଡ଼ା ଭଳି । ଚମଡ଼ା ପଛଆଡ଼େ ଚୁମ୍ବକଟିଏ ଅଛି । ଚୁମ୍ବକ ଓ ପରଦା ମଝିରେ ଖଣ୍ଡିଏ ଲୁହା ଥାଏ । ଲୁହା ଖଣ୍ଡଟି ଗୋଟିଏ ଛୋଟ ହାତୁଡ଼ି ଭଳି । ଚୁମ୍ବକ

ଗୁଣ୍ଡପଟେ ପତଳା ତାର ଗୁଡ଼ା ହୋଇଥାଏ । ଏହି ତାର କୁଣ୍ଡଳୀରେ ବିଜୁଳି ଛାଡ଼ିଲେ, ଚୁମ୍ବକ ଶକ୍ତି ଆସେ । ବିଜୁଳି କମ ବେଶି ହେଲେ ଚୁମ୍ବକ ଶକ୍ତି କମ ବେଶି ହୁଏ । ଚୁମ୍ବକ ବେଶି ହେଲେ ଲୁହା ହାତୁଡ଼ିକୁ ଜୋରରେ ଟାଣେ । ଚୁମ୍ବକ କମ ହେଲେ ଲୁହାକୁ ଧୀରେ ଧୀରେ ଟାଣେ । ଏମିତି ଭାବରେ ହାତୁଡ଼ିଟି କମ୍ପେ । ଏହି କମ୍ପିବା ପବନରେ ଢେଉ କରେ । ପବନ ଢେଉ ପରଦାକୁ କମ୍ପାଏ । ପରଦାର କମ୍ପନ ଆମ କାନ ପାଖରେ ଥିଲେ ଆମେ ଶୁଣିପାରୁ ।

ଟେଲିଫୋନର ମୂଳକଥା ହେଲା ପବନରେ କମ୍ପନ ତିଆରି କରିବା; କମ୍ପନ ଯୋଗୁ ଚୁମ୍ବକ ଶକ୍ତିକୁ କମ ବେଶି କରିବା । ଚୁମ୍ବକ କମ ବେଶି ହେଲେ ବିଜୁଳି ସୁଅ କମ ବେଶି ହେବ । ଏହି ବିଜୁଳି ସୁଅ ତାରରେ ଯିବ । ତାର ଶେଷରେ ଥିବା ଫୋନରେ ଠିକ୍ ଏହାର ଓଲଟା ହେବ । ପରଦା ହଲିବ; ପବନରେ ଢେଉ ହେବ; ଢେଉ କାନର ପରଦାକୁ ହଲାଇବ, ଆମେ ଶୁଣିବା ।

ବୈଜ୍ଞାନିକମାନେ ଏମିତି ବିଜୁଳିକୁ କଥା କହିବା ଶିଖାଇଲେ ।

# ଟେଲିଫୋନ ପୂର୍ବରୁ ଟେଲିଗ୍ରାଫ୍

ଫୋନ୍‌ରେ ଆମେ କଥାଟା ସିଧାସଳଖ ଶୁଣୁ । କିନ୍ତୁ ଟେଲିଗ୍ରାଫ୍‌ରେ ଲେଖାଟିଏ ପାଉଁ । 'ଟେଲି' ଶବ୍ଦର ମାନେ ଦୂର । 'ଗ୍ରାଫ୍'ର ମାନେ ଲେଖା । ଟେଲିଗ୍ରାଫ ମାନେ ଦୂର ଲେଖା । ଏହି ଦୂର ଲେଖା ଯାହା ଖବର ଦିଏ, ତାକୁ ଟେଲିଗ୍ରାମ କହୁଁ । ଟେଲିଗ୍ରାମ୍‌କୁ ଆମେ 'ତାର' କହୁ ।

ଡାକବାଲା ତାର ଆସିଛି କହିଲେ ଆମେ ଟିକେ ଶଙ୍କି ଯାଉ । ଅତି ଜରୁରୀ ନଥିଲେ କେହି ତାର କରେ ନାହିଁ । ଜଲ୍‌ଦି ଆସ, କି ଜଲ୍‌ଦି କିଛି ଟଙ୍କା ପଠାଅ—ଏଥିଲାଗି ତାର ଆସେ । ଭଲ ଖବର ଥିଲେ ବି ତାର ଆସେ । ପିଲାଟିଏ ଜନ୍ମ ହୋଇଛି, କି ବାହାଘରକୁ ଆସିବ ।—ଏ ଖବର ଆସେ । ବେଳେ ବେଳେ ଅମୁକ ମରିଗଲା, ସମୁକର ଦେହ ଭୀଷଣ ଖରାପ, କଣିବାଠାରୁ ଉଠି ଆସ—ଏ ଖବର ବି ଆସେ ।

ତାରରେ ବିଜୁଳି ଯାଏ, ଏ କଥା ଜାଣିବା ଦିନଠାରୁ ମଣିଷ ତାରରେ ଖବର ପଠାଇବାକୁ ଚାହିଁଲା । ସହର ମାନଙ୍କରେ ବଡ଼ ବଡ଼ ଘରକୁ ଗଲେ, କିମ୍ବା କୌଣସି ଅଫିସରଙ୍କ ଘରକୁ ଗଲେ, ଆମେ ତାଙ୍କ ଦ୍ୱାରରେ ଥିବା ଘଣ୍ଟିକୁ ଚିପି ଦେଉ । ଚିପି ଦେଲେ ଘର ଭିତରେ ଘଣ୍ଟିଟିଏ ବାଜି ଉଠେ । ଘରବାଲା ଜାଣିଯାଏ, କିଏ ଜଣେ ଦୁଆର

ମୁହୂର୍ତ୍ତରେ ଡାକୁଛୁ । ଘଣ୍ଟି ବାଜିବା ଏମିତ ଗୋଟିଏ ସଙ୍କେତ ହୁଏ । ଟେଲିଗ୍ରାଫ୍‌ରେ ସେମିତ ସଙ୍କେତ ପଠାଯାଏ । ବାର୍ତ୍ତା ଦୂରକୁ ପଠାଯାଏ ।

୧୮୩୭ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଟେଲିଗ୍ରାଫ୍ ବ୍ୟବସ୍ଥା ବ୍ୟବହାର ହେଲା । ଏହାକୁ ତିଆରି କରିଥିଲେ ଆମେରିକାର ସାମୁଏଲ ମୋର୍ସ । ବିଜୁଳିର ଚୁମ୍ବକ ଶକ୍ତି ଉପରେ ଏହା ତିଆରି ହୋଇଛି ।



[ ଏପରି ତାର ପଠାଇବା ଓ ପାଇବା ଯନ୍ତ୍ର ୧୮୪୦ ଖ୍ରୀଷ୍ଟାବ୍ଦ ପାଖାପାଖି ବ୍ୟବହାର ହେଉଥିଲା । ଏଥିରେ ଗୋଟିଏ ତାର ଅଛି । ପୃଥିବୀକୁ ଛୁଇଁଲେ ତାହା ଆଉ ଗୋଟିଏ ତାର ଭଳି କାମ କରେ । ତେଣୁ ପାତଟିକୁ ଚିପିଦେଲେ ବିଜୁଳି କରେଣ୍ଟ ଗଲେ, ଛାଡ଼ିଦେଲେ କଟିଯାଏ । ଆସୁଥିବା ତାର ମଧ୍ୟ ଏହି ଯନ୍ତ୍ରରେ ଟରେ ଟକ୍କା ଶବ୍ଦ କରେ । ତାଲିମ ପାଇଥିବା ଲୋକ ଏହାର ମାନେ ଜାଣିପାରେ । ଯନ୍ତ୍ର ବି କାଗଜ ଉପରେ ବିନ୍ଦୁ ବିନ୍ଦୁ ବା ଗାର ଗାର ଚିହ୍ନ କରି ତାର ଜଣାଏ ।]

ସୁଇଚ୍‌ଟିଏ ଚିପି ଦେଲେ ଆମ ଘରେ ବିଜୁଳି ଆଲୁଅ ଜଳୁଛି । ସୁଇଚ୍‌ଟାକୁ ଖୋଲିଦେଲେ ଆମେ ତା ଭିତରେ ଗୋଟିଏ ସ୍ପ୍ରିଙ୍ଗ୍ ଥିବା ଦେଖିବା । ସ୍ପ୍ରିଙ୍ଗକୁ ଆମେ କମାଣୀ

କହୁଁ । ସୁଇଚ୍‌କୁ ଖଟ୍‌କା କହୁଁ । ଖଟ୍‌କା ଟେକା ହୋଇଥିବା ବେଳେ, ତାରରେ ବିଜୁଳି ଯାଏ ନାହିଁ । ଖଟ୍‌କା ପକାଇ ଦେଲେ (ସୁଇଚ୍ ଟିପି ଦେଲେ, ବା ଅନ୍ କଲେ), ତାର ଯୋଡ଼ ହୋଇଯାଏ, ବିଜୁଳି ସୁଅ ଛୁଟେ । ଅର୍ଥାତ୍ ବିଜୁଳି ଧାର୍ ପୁରା ହୁଏ । ବିଜୁଳି କର୍ମଚାରୀମାନେ କହନ୍ତି ସର୍କିଟ୍ ପୁରା ହୋଇଗଲା ।

ସୁଇଚ୍ ଟିପି ଦେବା ମାନେ ତୁମକୁ ବିଜୁଳି ଯୋଗାଇବା । ତୁମେ ବିଜୁଳି ପାଇଲେ ତା ଭିତରେ ଥିବା ପତଳା ତାର ଜଳି ଉଠେ । ଆଲୁଅ ହୁଏ । ଦରକାରୀ କାଗଜକୁ ବିଜୁଳି ପଠାଇବାକୁ ସୁଇଚ୍ ଟିପିବାକୁ ପଡ଼େ ।

ସାମୁଏଲ୍ ମୋର୍ସ ଏମିତି ଗୋଟିଏ କମାଣୀ ଖଟ୍‌କା ବ୍ୟବହାର କରିଥିଲେ । ସେ ଯେତେବେଳେ ଖଟ୍‌କାଟିକୁ ଚିପି ଦେଉଥିଲେ, ତାରରେ ବିଜୁଳି ଯାଇ ଖଣ୍ଡିଏ ଲୁହାକୁ ଚୁମ୍ବକ କରି ଦେଉଥିଲା । ପାଖରେ କମାଣୀଲଗା ଖଣ୍ଡିଏ ଲୁହା ପାତ ଥିଲା । ତାକୁ ଚୁମ୍ବକ ଟାଣି ନେଉଥିଲା । ଲୁହା ପାତଟି ଟାଣି ହୋଇ ଚୁମ୍ବକରେ ପିଟି ହେଉଥିଲା । ଟିକ୍ କରି ଶବ୍ଦ ହେଉଥିଲା । ଚୁମ୍ବକକୁ ଛୁଇଁ ଦେବାକ୍ଷଣି କମାଣିର ଜୋର ଯୋଗୁ ପାତଟି ପୁଣି ଫେରି ଯାଉଥିଲା । ଫେରି ପିଟି ହେଉଥିଲା ପୁଣି ଟିକ୍ କରି ଶବ୍ଦ ହେଉଥିଲା । ଏମିତି ଥରେ ଚୁମ୍ବକଟିରେ ପିଟି ହୋଇ ଆଉ ଥରେ କମାଣୀରେ ପିଟି ହେଉଥିଲା । ଯେତେଥର ସୁଇଚ୍ ଟିପିବା ସେତେଥର ଏମିତି ଟିକ୍ ଟିକ୍ ଶବ୍ଦ ହେବ । ଏହି ଶବ୍ଦ କାନକୁ ଶୁଣାଯିବ । ମୋର୍ସ

ଲୁହା ପାତଟିର ପିଟି ହେବା ଶବ୍ଦରୁ ବନ୍ଧୁ ଓ ଗାର ସୂଚନା ପାଇଥିଲେ ।

ତାର ଘରେ ଯେଉଁ ଲୋକ ତାର ପଠାଏ ସେ ଗୋଟିଏ ଲୁହା ବାଡ଼ିକୁ ଆଙ୍ଗୁଠି ଟିପରେ ଠକ୍ ଠକ୍ କରି ଥରକୁ ଥର ଚିପେ । ଏହାକୁ ଚାବି ବା କି କୁହାଯାଏ । ଚାବି ଚିପଲେ ବିଜୁଳି ସ୍ରୁଅ ତାରରେ ଯାଏ, ଛାଡ଼ିଦେଲେ ବିଜୁଳିବନ୍ଦ



[ଏହାକୁ କହନ୍ତି 'ସେମାଫୋର ଶଲେ' । ୧୭୯୦ ଖ୍ରୀଷ୍ଟାବ୍ଦରେ ପାଖାପାଖି ଏମିତି ଗୁଡ଼ିଏ ଖମ୍ବ ଗୋଟାକ ପରେ ଗୋଟାଏ ବସା ଯାଉଥିଲା । ଏଥିର ଅଗରେ ଥିବା କାଚ ଫାଳିଆରେ ଆଲୁଅ ପଡ଼ିଲେ ତାହା ପାଖରେ ଥିବା ଖମ୍ବର ଅଗରେ ଥିବା କାଚ ଫାଳିଆରେ ପଡ଼ୁଥିଲା । ଆଲୁଅର ଠାରରେ ଖବର ଦେଇ ହେଉଥିଲା ।]

ହୁଏ । ଲିଗ ଲିଗ ଗୃପିଠିଲେ ଲିଗ ଲିଗ ବନ୍ଦୁ ହେବ, ଛାଡ଼ି ଗୃପ ଗୃପିଲେ ଗାରର ସୂଚନା ହେବ ।

ଆଜିକାଲି ଭଲ ଭଲ ଯନ୍ତ୍ର ବାହାରିଲାଣି । ଯନ୍ତ୍ର ଏହି ବନ୍ଦୁ ଓ ଗାରର ସୂଚନାରୁ ଆପେ ଆପେ ଶବ୍ଦ ତିଆରି କରେ । ଡାକଘରେ କାନ ଡେରି ବସିବାକୁ ଦରକାର ପଡୁନାହିଁ । ଅବଶ୍ୟ ଛୋଟ ଛୋଟ ତାର ଘରେ ଡାକମାଷ୍ଟର ଏବେ ବି କାନ ଡେରି ରହିଥାଏ । ଟେଲିଗ୍ରାଫ୍ ଯନ୍ତ୍ରରେ ଶବ୍ଦ ହେଲେ ସେ ଗ୍ରହଣ କରେ । ପାଇଲି ବୋଲି ଜଣାଇଦିଏ ।

## ସେପାଖରେ ଛାପି ହୋଇଯାଏ

ତାଲିମ ପାଇଥିବା ତାରକଲି ବଲି ମିନିଟକୁ ୩୦ଟି ଶବ୍ଦ ପଠାଇପାରେ । ପୃଥିବୀରେ ସବୁଠୁ ବେଶି ମିନିଟକୁ ୭୦ ଶବ୍ଦ ପଠା ହେବାର ହିସାବ ଅଛି । ଏତେ ଶୀଘ୍ର ଶୀଘ୍ର ଶବ୍ଦ ଉଦ୍ଧାରିବା କଷ୍ଟ । ତେଣୁ ଟାଇପ୍‌ରାଇଟର ବା ଲେଖିବା ଯନ୍ତ୍ର ବ୍ୟବହାର ହୁଏ ।

ମିନିଟକୁ ୩୦ଟି ଶବ୍ଦ ପଠାଇବା ବି ବେଶି ଜଲଦି ନୁହେଁ । ଧରନ୍ତୁ ଏହି ପୃଷ୍ଠାଟିର ସବୁ ଲେଖା ଆମେ ତାର କରିବା । ଆମକୁ ତ ଅଧଘଣ୍ଟାଏ ପାଖାପାଖି ଲାଗିଯିବ । ଦିନଯାକ କେତେ ପୃଷ୍ଠା ଖବର ପଠାଇ ହେବ ?

ତେଣୁ ବୈଜ୍ଞାନିକମାନେ ନୂଆ ଯନ୍ତ୍ର କାଢିଲେ । ଏହା ନୂଆ ପ୍ରକାରର ଗୋଟିଏ ଟାଇପ୍ ରାଇଟର । ଏଥିରେ କାଗଜ ଫିତା ଲାଗେ । ମୋର୍ସଙ୍କ ସଙ୍କେତ ଅନୁଯାୟୀ କାଗଜ ଫିତାରେ କଣା କଣା ଚିହ୍ନ ହୁଏ । ବାଁ ଡାହାଣ ଦୁଇଟା କଣାର ମାନେ ବିନ୍ଦୁ । ଉପର ତଳ ଦୁଇଟା କଣାର ମାନେ ଗାର । ଚଞ୍ଚଳ ସିନା ହେଲା, କିନ୍ତୁ ଆଗ ବ୍ୟବସ୍ଥାଠାରୁ ବେଶି ଭଲ ହେଲା ନାହିଁ । ଖବର ପାଉଥିବା ତାରଘରେ ଟାଇପରାଇଟରଟି ଏହି କଣାଗୁଡ଼ିକରୁ ପୁଣି ଅକ୍ଷର ଲେଖୁଥିଲା । ତେଣୁ ବେଶିଗୁଡ଼ାଏ ଖବର ପଠାଇବା ସମ୍ଭବ ହେଲା ନାହିଁ ।

ଚଞ୍ଚଳ ଚଞ୍ଚଳ ଖବର ପଠାଇବା ପାଇଁ ନୂଆ ବ୍ୟବସ୍ଥା ଦରକାର ହେଲା । ୧୮୭୨ରେ ଫ୍ରାନ୍ସରେ ବାଉଦୋ ବ୍ୟବସ୍ଥା ବାହାରିଲା । ଯିଏ ବାହାର କଲେ ତାଙ୍କ ନାଁ । ଜାଁ ମରିସ୍ ଏମିଲ ବାଉଦୋ । ମୋର୍ସଙ୍କ ସଙ୍କେତ ଭଳି ଏହା କାମ କରେ । କିନ୍ତୁ ଏଥିରେ ଦୁଇ ଅଙ୍କ ବ୍ୟବସ୍ଥା ଲାଗୁ ହୁଏ । ଅର୍ଥାତ୍ ମାତ୍ର ଦୁଇଟି ଜିନିଷ ବ୍ୟବହାର ହୁଏ । ସୁଇଚ୍ ଟିପିବା ଓ ଛାଡ଼ିଦେବା । ଟିପିଲେ ବିନ୍ଦୁ ହେବ, ଛାଡ଼ିଦେଲେ ଗାର ବା ଶୂନ୍ୟ ହେବ । ଗୋଟିଏ କଥା ମନେ ରଖିବାକୁ ପଡ଼ିବ । ପ୍ରତି ଅକ୍ଷର ଆରମ୍ଭ ପୂର୍ବର ଗାର ଓ ଶେଷ ହେବା ପରେ ବିନ୍ଦୁ ରହିବ । ପୁଣି ସଙ୍କେତକୁ ଅଦଳବଦଳ କରି ଅକ୍ଷର ବଦଳରେ ଅଙ୍କ ଲେଖି ହେବ ।

ଏହି ବାଉଦୋ ବ୍ୟବସ୍ଥାରେ ତାର ଖବର ଗଲେ, ପହଞ୍ଚିବା ଜାଗାରେ ଖବରଟା ଲେଖି ହୋଇଯାଏ । ଖୁବ୍

ଶୀଘ୍ର ଶୀଘ୍ର ଲେଖି ହୁଏ । ଏହି ବ୍ୟବସ୍ଥାକୁ ଦୂର ଛାପା ବା ଟେଲିପ୍ରିଣ୍ଟର କହନ୍ତି ।

ଟେଲିପ୍ରିଣ୍ଟର ଠିକ୍ ଟାଇପ୍ ରାଇଟର ଭଳି । କିନ୍ତୁ କେତେଗୁଡ଼ିଏ ଅଧିକା ଚାବି ଥାଏ । ଯଥା - ତୁମେ କିଏ ? ଚାବିଟି ଟିପିଦେଲେ ପାଇବା ବାଲା ନିଜର ପରିଚୟ ଦେବ ।



୧୮୫୫ରେ ଛାପିବା ଟେଲିଗ୍ରାଫ୍ ବାହାରିଲା । ଆମେରିକାରେ ରହୁଥିବା ଇଂରେଜ ଅଧ୍ୟାପକ ଡେଭିଡ୍ ହ୍ୟୁଜ୍ ତିଆରି କରିଥିଲେ । ଏଥିରେ ହାର୍ମୋନିୟମ ଭଳି ଗୁଡ଼ିଏ କୁଞ୍ଚି ଥିଲା । ଭିନ୍ନ ଅକ୍ଷର ପାଇଁ ଭିନ୍ନ କୁଞ୍ଚି । ଅକ୍ଷର କୁଞ୍ଚି ଚାପିଦେଲେ ସେଇଭଳି ବିଜୁଳି ସୁଅ ଯାଉଥିଲା, ପାଉଥିବା ଲୋକର ଯନ୍ତ୍ର ତାକୁ ପୁଣି ଅକ୍ଷର କରି ଦେଉଥିଲା ।

ପୃଷ୍ଠା ପୃଷ୍ଠା କରି ଆମେ ଯେମିତି ଟାଇପ୍ କରିବା, ଟେଲିପ୍ରିଣ୍ଟର ସେହିପରି ପୃଷ୍ଠା ପୃଷ୍ଠା ଛାପିବ । ଆମେ 'ଧାଡ଼ି ବଦଳାଅ' ଚାବିଟି ଚପିଦେଲେ, ପାଇବା ଟେଲିପ୍ରିଣ୍ଟରଟି କାଗଜପୃଷ୍ଠାକୁ ଗୋଟିଏ ଧାଡ଼ି ଉପରକୁ ଉଠାଇ ଦିଏ । ପୁଣି

ନୂଆ ଧାଡ଼ି ଲେଖା ପାଇଁ ତିଆରି ହୋଇଯାଏ । ଆମେ ଯେମିତି ପୃଷ୍ଠା ପୃଷ୍ଠା ଟାଇପ୍ କରିବା, ଟେଲିପ୍ରିଣ୍ଟରଟି ସେଇମିତି ପୃଷ୍ଠା ପୃଷ୍ଠା ଟାଇପ୍ କରିଯାଏ ।

## ଖବର କାଗଜ କମିତ ଖବରପାଏ ?

ଖବର କାଗଜରେ ଆମ ରାଜ୍ୟର ଖବର ଥାଏ । ଅନ୍ୟ ରାଜ୍ୟର ବି ଖବର ଥାଏ । ବିଦେଶର ବି ଖବର ଥାଏ ପୁଣି ବିଭିନ୍ନ ଖବର କାଗଜରେ ଏକାରକମର ଖବର ଛାପା ହୁଏ । କେହିତ ମିଛ ଲେଖିବ ନାହିଁ । ଯାହା ଖବର ପାଇବ ତାହା ଛପାଇବ ।

ଗାଁ ଗହଳର ଖବର ସିନା ଲୋକେ ପଠାନ୍ତି । ଦୂର ଖବର ଯଦି ଡାକଘର ବାଟେ ଆସିବ, ଚାରିପାଞ୍ଚ ଦିନ ପୁରୁଣା ହୋଇଯିବ । ତେ ତାରରେ ଆସିବ । ଖବର ଦେବା ପାଇଁ ସଂସ୍ଥା ଅଛି । ଏଗୁଡ଼ିକୁ ସମ୍ବାଦ ସରବରାହ ସଂସ୍ଥା କୁହାଯାଏ । ଯଥା ପ୍ରେସ ଟ୍ରଷ୍ଟ ଅଫ ଇଣ୍ଡିଆ ସଂକ୍ଷେପରେ ପି. ଟି. ଆଇ, ଆସୋସିଏଟେଡ୍ ପ୍ରେସ୍, ସଂକ୍ଷେପରେ ଏ. ପି. । ରଏଟର ହିନ୍ଦୁସ୍ଥାନ ସମାଚାର, ୟୁଏନ୍ ଆଜି କେତେ ଅଛି । ଖବର କାଗଜଟିଏ ପଢିଲେ ଆମେ ଦେଖିବା ପ୍ରତି ଖବର "ନିଜ ପ୍ରତିନିଧିଙ୍କଠାରୁ ଆସିଛି; କିମ୍ବା ଏମିତି ଗୋଟିଏ ଲେଖାଏଁ ସମ୍ବାଦ ସରବରାହ ସଂସ୍ଥାରୁ ଆସିଛି ।" ସଂସ୍ଥାର ନାମ ଖବର ସାଙ୍ଗରେ ଯୋଡ଼ାଯାଏ ।

ଦୂରରୁ ସହଜରେ ସହଳ ଖବର ପଠାଇବା ପାଇଁ ଟେଲିପ୍ରିଣ୍ଟର ଦରକାର । ସମ୍ବାଦ ସରବରାହ ସଂସ୍ଥାମାନେ

ଏକ ରକମର ଖବର ବିଭିନ୍ନ ଖବରକାଗଜକୁ ପଠାନ୍ତି । ଏହି ଖବର ପାଇବା ପାଇଁ ଖବର କାଗଜମାନେ ସଂସ୍ଥାକୁ ଖର୍ଚ୍ଚ ଦିଅନ୍ତି । ବହୁତ ଗୁଡ଼ାଏ ଖବରକାଗଜକୁ ଏକା ସାଙ୍ଗରେ ଏକା ଖବର ପଠାଇବାକୁ ଟେଲିପ୍ରିଣ୍ଟର ବେଶ୍ ସୁବିଧା । ଦେଶସାରା ତାର ବ୍ୟବସ୍ଥା ଅଛି । ଗୋଟିଏ ଖବରକୁ ଟାଇପ୍ କଲେ ଦେଶସାରା ଜାଲଭଳି ବିଛେଇ ହୋଇଥିବା ତାର ଜରିଆରେ ଏହି ଖବର ଟାଇପ୍ ହୋଇ ବାହାରେ । ସାଧାରଣତଃ ଇଂରାଜୀରେ ଟେଲିପ୍ରିଣ୍ଟର ଛପାଏ । ଓଡ଼ିଆ ଛାପା ଏଯାଏ ବାହାରି ନାହିଁ । ତେଣୁ ଓଡ଼ିଆ କାଗଜମାନେ ଇଂରାଜୀରୁ ଓଡ଼ିଆ ଅନୁବାଦ କରି ଖବର ପଠାନ୍ତି ।

[ଖବର କାଗଜର ଗୋଟିଏ କଲମ]

## ନିର୍ବାଚନ ସଂସ୍କାର ପ୍ରସ୍ତାବର ସମୀକ୍ଷା

ନୂଆଦିଲ୍ଲୀ, ତା ୧୭ । ୮—ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳର ମୁଖ୍ୟ ନିର୍ବାଚନ ଅଫିସରମାନଙ୍କ ମଧ୍ୟ ନିର୍ବାଚନ କମିଶନ ଚାଳନ ବ୍ୟବସ୍ଥାର ସଂସ୍କାର ପ୍ରସ୍ତାବ ଉପରେ ଆଲୋଚନା କରିବେ । ଏହି ବୈଠକ ତାମିଲନାଡୁର ଉଟକାମଣ୍ଡଠାରେ ଆସନ୍ତା ୨୯ ତାରିଖରେ ଅନୁଷ୍ଠିତ ହେବ ।

ମୁଖ୍ୟ ନିର୍ବାଚନ କମିଶନର ଆର. ଭି. ଏସ. ପେରିଶାସ୍ତ୍ରୀ ଏଥିନେଇ ସମୀକ୍ଷା କରିବେ । ତାଙ୍କୁ ଡକ୍‌ଟର ଆର. ପି. ଭଣ୍ଡା ଓ ଶ୍ରୀ ଜେ. ସି. ସାହା ପ୍ରମୁଖ ସହଯୋଗ କରିବେ ।

(ୟୁ. ଏ, ପି. ଟି.)

ଲଣ୍ଡନରୁ ଆସୁଥିବା ରଏଟର ଖବର କଟକରେ ଖବରକାଗଜ ମାନଙ୍କୁ ମିଳିଥାଏ । ଏଥିପାଇଁ ସେମାନେ ଆଗତୁରା ଖର୍ଚ୍ଚ ଦେଇଥାନ୍ତି ।

କେବଳ ଖବରକାଗଜ କାହିଁକି, ପୋଲିସ୍‌ଥାନା, ରେଲବାଇ ଅଫିସ, ଉଡ଼ାଜାହାଜ ଷ୍ଟେସନ ବ ଟେଲିପ୍ରିଣ୍ଟର ଦ୍ୱାରା ଖବର ଦିଆ ନିଆ କରିଥାନ୍ତି । ଟେଲିପ୍ରିଣ୍ଟର ସେବା ଦିନରାତି ସବୁବେଳେ ମିଳେ । ତେଣୁ ଏହାଲାଗି ପ୍ରତି ଅଫିସରେ ସ୍ୱତନ୍ତ୍ର ତାର ବା ଲାଇନ ଦିଆଯାଇଥାଏ ।

ଡାକ ଓ ତାର ଘରମାନଙ୍କରେ ଆଉ ଗୋଟିଏ ପ୍ରକାର ଦୂରସଞ୍ଚାର ସେବା ମଧ୍ୟ ମିଳେ । ଏହାର ନାମ ଟେଲେକ୍ସ ସେବା ।

ବଡ଼ ଡାକଘରେ ଟେଲେକ୍ସ ସେବା ମିଳେ । ଠିକ୍ ଫୋନ୍ ଭଳି କାମ କରେ । ପ୍ରଭେଦ ଏତିକି ଯେ ଯାହା ପାଖରେ ଟେଲେକ୍ସ ଥିବ ତା ସାଙ୍ଗରେ ଯୋଗାଯୋଗ ରଖି ହେବ । ଏଥିରେ ବ ଟେଲିପ୍ରିଣ୍ଟର (ଦୂର ଛାପା ଯନ୍ତ୍ର) ଦରକାର ।

ଆମେ ଫୋନ୍ ଉଠାଇଲେ ପ୍ରଥମେ ନିକଟର ଫୋନ୍ ଘରକୁ ଖବର ଯାଏ । ଏହି ଫୋନ୍ ଘରକୁ ଏକ୍‌ସଚେଞ୍ଜ କୁହାଯାଏ । ଏକ୍‌ସଚେଞ୍ଜର ମାନେ ବଦଳା ବଦଳି । ଏହି ଘରେ ଆମେ ଚାହୁଁଥିବା ନମ୍ବରକୁ ଯୋଡ଼ି ଦିଆଯାଏ । ଆମ ନମ୍ବରକୁ ସେ ନମ୍ବର ସାଙ୍ଗରେ ଯୋଡ଼ା ଯାଏ । ତେଣୁ ଏହାର ନାମ ଏକ୍‌ସଚେଞ୍ଜ ରଖାଯାଇଛି ।

ଟେଲେକ୍ସ ଖବର ପଠାଇବା ପାଇଁ ସେଇମିତି ପାଖର ଟେଲେକ୍ସ ଏକସ୍‌ଚେଞ୍ଜ ବାଟେ ଯିବାକୁ ପଡ଼ୁଥାଏ । ଟେଲେକ୍ସ ଯନ୍ତ୍ରରେ ଗ୍ରାହକଙ୍କ ନମ୍ବର ଟିପି ଦେଲେ ଏକସ୍‌ଚେଞ୍ଜରେ ସେହି ନମ୍ବରକୁ ଯୋଡ଼ ହୋଇଯାଏ । ବହୁତ ଦୂର ଖବର ଦେବାର ଥିଲେ, ବାଟରେ ଗୁଡ଼ାଏ ଏକ୍ସଚେଞ୍ଜ ପଡ଼ିପାରେ ।

ଥରେ ଥରେ ଖବର କାଗଜରେ ଖବର ସାଙ୍ଗରେ ଛବି ବି ଛପା ହୋଇଥାଏ । ଛବି ତଳେ ଲେଖାଥାଏ, ରେଡ଼ିଓ ଛବି ବା ତାର ଛବି ।

ରେଡ଼ିଓ ତରଙ୍ଗରେ ବା ତାର ଦେଇ ଆସୁଥିବା ଛବି ଟିକେ କାଲକାଲୁଆ ଦିଶେ । କ୍ୟାମେରାରେ ଉଠିଥିବା ଛବି ଭଳି ଠେସ୍ ଦେଖାଯାଏ ନାହିଁ । ଏ ଛବି କେମିତି ଆସେ ?

ଫଟୋ ଉଠାଇ ଡ଼ାକରେ ପଠାଇଲେ କେତେଦିନ ଲାଗିବ, ଠିକ୍ ନାହିଁ । ତେଣୁ ଖବର ସାଙ୍ଗରେ ଛବି ଛପା ହୋଇ ପାରିବ ନାହିଁ । ଖବର ସାଙ୍ଗରେ ଛବିଟା ବି ପହଞ୍ଚିବା ଦରକାର । ତେଣୁ ଛବିଟିର ଫଟୋକୁ ଗୋଟିଏ ଢୋଲ ଗୁଣ୍ଡପଟେ ଗୁଡ଼ାଇ ଦିଆଯାଏ । ତା ଉପରେ ଛୁଞ୍ଚି ମୁନ ଭଳିଆ ପତଳା ଆଲୁଅ ପକାଯାଏ । ଢୋଲଟା ବୁଲିଲା ବେଳେ ଆଲୁଅ ପଡ଼ି ଫେରିଆସେ । ଆଲୁଅର ଏହି 'ପ୍ରତି-ଫଳନ'କୁ ଗୋଟିଏ ଯନ୍ତ୍ର ଟିପି ରଖେ । ଢୋଲ ଘୂରୁଥିବାରୁ ଆଲୁଅ ଫେରି ଆସୁଥିବା ରେଖାଗୁଡ଼ିକ ବୃତ୍ତ ଭଳି ଟିପି ହୋଇଯାଏ । ଯନ୍ତ୍ରଟି କେବଳ ଆଲୁଅକୁ ଚିହ୍ନେ, ଆଉ କିଛି

ଚଦ୍ଧେ ନାହିଁ । ଫଟୋର ଧଳାଅଂଶ ବେଶି ଆଲୁଅ ଫେରାଏ କଳା ଅଂଶ କମ ଆଲୁଅ ଫେରାଏ, ଗାଢ଼ କଳା ହେଲେ ଆଦୌ ଆଲୁଅ ଫେରେ ନାହିଁ । ଅନ୍ଧାର ହୁଏ । ଯନ୍ତ୍ର ସାଙ୍ଗରେ ଗୋଟିଏ ବ୍ୟାଟେରୀ ଯୋଡ଼ା ହୋଇଥାଏ । ଯନ୍ତ୍ର ଯେତେ ବେଶି ଫେରନ୍ତା ଆଲୁଅ ପାଇବ, ବ୍ୟାଟେରୀରେ ସେତେ ବେଶି ବିଜୁଳି ସୁଅ ବା କରେଣ୍ଟ ଚାଲୁ ହେବ । ଏମିତି କମ ବେଶି କରେଣ୍ଟ ତାର ଜରିଆରେ ଦୂରକୁ ପଠା ଯାଏ । ପାଇବା ବାଲାର ଯନ୍ତ୍ର ଠିକ୍ ଏହାର ଓଲଟା କାମ କରେ । ବିଜୁଳି କରେଣ୍ଟରୁ ଆଲୁଅ ନେଇ, ଛବି ଛପାଇ ଦିଏ ।

ବହୁତ ଦୂରରୁ ଆସୁଛି ତ, ତେଣୁ କରେଣ୍ଟ ଟିକେ ଏପାଖ ସେପାଖ ହୋଇଯାଏ । ଆଲୁଅ କମ ବେଶି ହୋଇଯାଏ । ଖବର କାଗଜରେ ଛବିଟା ଟିକେ ମଳିଛା ବା ଅସ୍ପଷ୍ଟ ଦିଶେ ।

ଛବି କେମିତି ଖୁବ୍ ଠୋସ୍ ବା ସ୍ପଷ୍ଟ ଦିଶିବ ସେଥିଲାଗି ଆଜିକାଲି ଭଲ ଯନ୍ତ୍ର ବସାଯାଉଛି ।

## ଦୂରକୁ ଫୋନ୍ କେମିତି ଯାଏ

ଆଗ କାଳରେ ଫୋନ୍ କରିବାକୁ ଡାକ ଘରର ଲୋକକୁ ଫୋନ ନମ୍ବର କହିବାକୁ ପଡୁଥିଲା । ଏବେ ବି

କେତେକ ଗାଁ ଫୋନ୍ ଏମିତ ଚାଲୁଛି । ଆପେ ଆପେ ନମ୍ବର ମିଳେ ନାହିଁ । ଫୋନ ଉଠାଇଲେ, ଡାକ ଘରର ଲୋକଟିଏ ପଚାରିବ—"ନମ୍ବର ପ୍ଲିଜ୍', ଅର୍ଥାତ୍ କେଉଁ ନମ୍ବର ଚାହୁଁଛନ୍ତି ? ଆପଣ ନମ୍ବରଟା କହି ଦେଲେ ସେ ସେହି ନମ୍ବରକୁ ଲଗାଇ ଦେବ ।

ଏ ପ୍ରକାର ଟେଲିଫୋନ୍ ଘରକୁ ହାତଚଳା ବା ମାନୁଆଲ୍ ଏକସଚେଞ୍ଜ କୁହାଯାଏ । ଏଥିରେ ନମ୍ବର ଲଗାଇବା ପାଇଁ ବିଜୁଳି ସୁଇଚ୍ ଭଳି କେତେକ ପ୍ଲଗ, ଠିପି ବା ଖିଲିଣ ଖୋପରେ ଭର୍ତ୍ତି କରିବାକୁ ପଡେ । ଯଦି ଦରକାରୀ ନମ୍ବର ଆଉ ଗୋଟିଏ ଏକସ୍‌ଚେଞ୍ଜ ବାଟେ ମିଳିବ, ତେବେ ଲୋକଟି ସେ ଏକସ୍‌ଚେଞ୍ଜକୁ ଲଗାଇ ନମ୍ବର ମାଗିବ । ଏକସ୍‌ଚେଞ୍ଜର ଏହି ଲୋକଟିକୁ ଅପରେଟର କୁହାଯାଏ ।

ଏମିତି ହାତଚଳା ଫୋନ୍ ବହୁତ ସମୟ ନିଏ । ଖବର ଦେବା ନେବା ଡେରି ହୁଏ । ଅପରେଟର ଟେଡ଼େ ଚଞ୍ଚଳ କଲେ ବି ତା କାମ ମନକୁ ପାଏ ନାହିଁ । ଅତି ଜରୁରୀ ବେଳେ ଡେ଼ରି ହେଲେ ଆମେ ଚିଡ଼ିଯାଉ ।

ଆଜିକାଲି ପ୍ରାୟ ସବୁ ଟେଲିଫୋନ୍ ଏକସ୍‌ଚେଞ୍ଜ ଆପେ ଆପେ କାମ କରୁଛି । ମଣିଷ ନାହିଁ ଯନ୍ତ୍ର ଠିକ୍ ଅପରେଟର ଭଳି କାମ କରୁଛି । ଏମିତିକା ଏକସ୍‌ଚେଞ୍ଜକୁ ଅଟୋମେଟିକ ବା ସ୍ୱୟଂଚାଳିତ ଏକସ୍‌ଚେଞ୍ଜ କହନ୍ତି ।

ଆପେ ଆପେ କାମ କରୁଥିବା ଏକ୍ସଚେଞ୍ଜରେ ଗୋଟିଏ ଶିକାରୀ ସ୍ୱିଚ୍ ଥାଏ । ଆମେ ନିଜ ଟେଲିଫୋନ୍ ଉଠାଇଲା କ୍ଷଣି ଏହି ଶିକାରୀ ସ୍ୱିଚରେ ଲାଗିଯାଏ । ନ ଲାଗିଲେ ଯେଉଁ ଗୁ ଗୁଁ ଶବ୍ଦ ହୁଏ, ତାହା ଜଣାଏ ଯେ ଏକ୍ସଚେଞ୍ଜ ବ୍ୟସ୍ତ ଅଛି । ଆମ ପାଇଁ ଲାଇନ୍ ନାହିଁ । ଅପେକ୍ଷା କର । ଟିକେ ପରେ ଫୋନ୍ କର ।



ପୁରୁଣା କାଳିଆ ଟେଲିଫୋନ୍ । ଏଥିରୁ ଦୁଇଟି ଲେଖାଏଁ ବ୍ୟବହାର କରିବାକୁ ପଡୁଥିଲା । ଗୋଟିଏ କହିବା ପାଇଁ, ଅନ୍ୟଟି ଶୁଣିବା ପାଇଁ ।

ଯଦି ଶିକାରୀ ସ୍ୱିଚ୍ ଧରିନେଲା ତେବେ ଲଗାତାର ଉଁ ଉଁ ଶବ୍ଦ ହେବ । ଏହାକୁ କହନ୍ତି ଡ଼ାଏଲ୍ ଟୋନ୍ । ଅର୍ଥାତ୍ ଲାଇନ ଖୋଲା ଅଛି, ନମ୍ବର ଲଗାଅ ।

ଆମ ଫୋନ୍‌ରେ ୧ରୁ ୯ ଓ '୦; ପର୍ଯ୍ୟନ୍ତ ଦଶଟି ସଂଖ୍ୟା ଲେଖାଯାଏ । ଦଶଟି କଣା ଥିବା ଗୋଟିଏ ଚକ ଏହି ସଂଖ୍ୟାଗୁଡ଼ିକ ଉପରେ ଥାଏ । ଏହି ଚକଟିକୁ ଡାଏଲ

ଲୁହାଯାଏ । ଟୋନ୍ ମାନେ ସ୍ୱର । ସ୍ୱର ଶୁଣାଗଲା ମାନେ ଡକ ଘର୍ଅ । ସେଥିଲାଗି ଏହାର ନାମ ଡାଏଲ ଟୋନ୍ ।

ପ୍ରତି ସହର ପାଇଁ ଭିନ୍ନ ଭିନ୍ନ ଦଳର ନମ୍ବର ଥାଏ । କଟକର ନମ୍ବର ସବୁ ପାଞ୍ଚ ଅଙ୍କର, ପୁଣି ୨ରୁ ଆରମ୍ଭ । ଭୁବନେଶ୍ୱରର ସବୁ ନମ୍ବର ପାଞ୍ଚ ଅଙ୍କର, କିନ୍ତୁ ୫ରେ ଆରମ୍ଭ । ଛୋଟ ଛୋଟ ସହରରେ ତିନି ଅଙ୍କର ନମ୍ବର ଥାଏ । ଗାଁରେ ଦୁଇ ଅଙ୍କର ନମ୍ବର ଥାଏ । ଫୋନ୍‌ର ଗରାଖ ସଂଖ୍ୟା ୯୯୯ରୁ କମ ହେଲେ ତିନି ଅଙ୍କର, ୯୯ରୁ କମ ହେଲେ ଦୁଇ ଅଙ୍କର ନମ୍ବର ଦିଆଯାଏ ।

ଗୋଟିଏ ସହର ବା ଗାଁରୁ ଆଉ ଗୋଟିଏ ସହର ବା ଗାଁକୁ ଫୋନ୍ କଲେ ଏକସ୍‌ଚେଞ୍ଜ ବାଟେ ଯିବ । ତେଣୁ ଏକସ୍‌ଚେଞ୍ଜର ନମ୍ବର ଆଗେ ବୁଲାଇବା, ତାପରେ ଲାଗ ଲାଗ ଡାକୁଥିବା ନମ୍ବରକୁ ବୁଲାଇବା । ସେଠାରେ ନମ୍ବର ଫାଙ୍କା ଥିଲେ କ୍ରିଂ କ୍ରିଂ ଶବ୍ଦ ହେବ । ଲୋକ ଉଠାଇଲେ ହିଁ କ୍ରିଂ କ୍ରିଂ ଶବ୍ଦ ବନ୍ଦ ହେବ । ନହେଲେ କ୍ରିଂ କ୍ରିଂ ଶବ୍ଦ ବାଜୁଥିବ । ବାଜିବାର ବି ସୀମା ଅଛି । ଅଧମିନିଟିଏ ବାଜିବା ପରେ ଫୋନ୍ ବନ୍ଦ ହୋଇଯାଏ । କିନ୍ତୁ ଗୋଟିଏ ସହର ଭିତରେ ଫୋନ୍ ଥିଲେ ସେପାଖ ଲୋକ ଫୋନ୍ ନଧରିବା ପର୍ଯ୍ୟନ୍ତ କ୍ରିଂ କ୍ରିଂ ବାଜୁଥିବ ।

ଆମ ଦେଶରେ ବିଭିନ୍ନ ସହର ପାଇଁ ସ୍ୱତନ୍ତ୍ର ଏକସ୍-ଚେଞ୍ଜ ନମ୍ବର ଦିଆଯାଇଛି । ବିଦେଶକୁ ଫୋନ୍ କଲେ

ସେଥିଲାଗି ମଧ୍ୟ ସ୍ୱତନ୍ତ୍ର ନମ୍ବର ରହିଛି । କେତେଗୁଡ଼ିଏ ଜାଗାର ନମ୍ବର ତଳେ ଦିଆଗଲା, ଆଗେ ଏହି ନମ୍ବର ଘୁରାଇ ପରେ ପରେ ଡାକୁଥିବା ନମ୍ବରକୁ ଘୁରାଇବାକୁ ପଡ଼ିବ ।



ଆଜିକାଲି ବଡ଼ ବଡ଼ ଏକ୍ସଚେଞ୍ଜରେ ଡ଼ାଏଲ ବ୍ୟବସ୍ଥା । ଅପରେଟର ଦରକାର ନାହିଁ ।

| | | | |
|---|---|---|---|
| ଦିଲ୍ଲୀ | ୦୧୧ | ସମ୍ବଲପୁର | ୦୬୬୩ |
| କଲିକତା | ୦୩୩ | ଢେଙ୍କାନାଳ | ୦୬୭୬୨ |
| ବମ୍ବେ | ୦୨୨ | ପୁରୀ | ୦୬୭୫୨ |

| | | | |
|---|---|---|---|
| ମାନ୍ଦ୍ରାଜ | ୦୪୪ | ପାରାଦ୍ୱୀପ | ୦୬୭୨୨ |
| କଟକ | ୦୬୭୧ | ବ୍ରହ୍ମପୁର | ୦୬୮୧୨ |
| ଭୁବନେଶ୍ୱର | ୦୬୭୪ | ଛତ୍ରପୁର | ୦୬୮୧୧ |
| ରାଉରକେଲା | ୦୬୬୧ | ଭଦ୍ରଖ | ୦୬୭୮୪ |
| ବାଲେଶ୍ୱର | ୦୬୭୮୨ | ଅନୁଗୁଳ | ୦୬୭୬୪ |
| ବାରିପଦା | ୦୬୭୯୨ | | |
| କୋରାପୁଟ | ୦୬୮୫୨ | | |

ଅନ୍ୟ ପକ୍ଷରେ ଯଦି କେହି ଅଳ୍ପ ଦୂର ପାଇଁ ଫୋନ କରେ, ସ୍ଥାନୀୟ ନମ୍ବର ସହିତ ଡାକବା ନମ୍ବର କରିପାରିବ । ଯଥା—

ବାଲେଶ୍ୱରରୁ ବାରିପଦା ୯୮ ବ୍ରହ୍ମପୁରରୁ ଛତ୍ରପୁର ୯୬
ବାରିପଦାରୁ ବାଲେଶ୍ୱର ୯୭ ଛତ୍ରପୁରରୁ ବ୍ରହ୍ମପୁର ୯୮

କେତେଗୁଡ଼ିଏ ଜାଗାକୁ ଯୋଡ଼ି ନମ୍ବର ଲଗାଇବାକୁ ପଡ଼େ, ଯଥା—

ମଞ୍ଚେଶ୍ୱର ୦୬୭୪—୬୮ । ଚୌଦ୍ୱାର ୦୬୭୧-୨୯
ଜଗତପୁର ୦୬୭୧-୨୮ । ଏହାର ଅର୍ଥ ମଞ୍ଚେଶ୍ୱରକୁ ଭୁବନେଶ୍ୱର ବାଟେ ଏବଂ ଅନ୍ୟ ଦୁଇଟିକୁ କଟକ ବାଟେ ଫୋନ୍ କରାଯିବ ।

ଧରନ୍ତୁ ଆମେ ଚୌଦ୍ୱାରର ୩୧ ନମ୍ବର ଫୋନକୁ ଚାହୁଁଛୁ; ତେବେ ଡ଼ାଏଲ୍ ଟୋନ୍ ଆସିବା କ୍ଷଣି ଆମେ ଯେଉଁ କ୍ରମରେ ନମ୍ବର ଚକ ବୁଲାଇବା ତାହା ହେଉଛି ୦୬୭୧-୨୯-୩୧ ।

# ଦୂରକୁ ଫୋନ୍ କପରି ଯାଏ

ଫୋନର ଚକ ବୁଲାଇଲେ କଣ ହୁଏ ? ଚକଟି ଗୋଟିଏ ସ୍ପ୍ରିଙ୍ଗ ବା କମାଣି ଉପରେ ଥାଏ । ଚକ ବୁଲିବା କ୍ଷଣି ସ୍ପ୍ରିଙ୍ଗ୍ ଠିକ୍ ଘଡ଼ିପ୍ରିଂବ ଭଳି ମୋଡ଼ି ହୋଇଯାଏ । ଚକର ଗାତରୁ ଆଙ୍ଗୁଳି କାଢି ଆଣିଲେ, ଚକଟି ପୂର୍ବସ୍ଥାନକୁ ଫେରିଆସେ । ସ୍ପ୍ରିଙ୍ଗ୍ ଖୋଲିଯାଏ । ସ୍ପ୍ରିଙ୍ଗ୍ ଖୋଲିଲା ବେଳେ ଟିକ୍ ଟିକ୍ ବା କର୍ କର୍ ଶବ୍ଦ ଶୁଭେ । ଏହି ଶବ୍ଦ ଗୋଟିଏ ଗୋଟିଏ ବିଜୁଳି ସଙ୍କେତ ବା ସୁଅ ପଠାଇବାର ସଙ୍କେତ । ସଂଖ୍ୟା ଦୁଇ ହେଲେ ସୁଅ ଦୁଇଥର ଯିବ । ଇଂରାଜୀରେ ଏହାକୁ ଇମ୍ପଲ୍ସ କହନ୍ତି । ଓଡ଼ିଆରେ ଚମକ କହିଲେ ଚଳିବ । ଶୂନ୍ୟ ଗାତଟିକୁ ବୁଲାଇଲେ ଦଶଟି ଇମ୍ପଲସ ହୁଏ । ଚିହ୍ନ ଦେଇ ଲେଖିଲେ ୨, ୪, ବା ୭ ଏ ପ୍ରକାର ହେବ । || |||| ||||||, ଏହି ଚମକଗୁଡ଼ିକ ଏକସ୍‌ଚେଞ୍ଜର ଶିକାରୀ ସୁଇଚରେ ପଶିଲେ ତାହା ଜାଣିପାରେ କେଉଁ ନମ୍ବର ଦରକାର ।

ଏକସ୍‌ଚେଞ୍ଜର ଗୋଟିଏ ଡାଇରେକ୍‌ଟର ବା ନିର୍ଦ୍ଦେଶକ ଯନ୍ତ୍ର ଥାଏ । ଶିକାରୀ ସୁଇଚରୁ ଡାଇରେକ୍‌ଟରକୁ ଖବର ଯାଏ । ଡାଇରେକ୍‌ଟର ପ୍ରତି ନମ୍ବର ପାଇଁ ବାଟ ଖୋଜେ । ବାଟ ଖୋଜିବା ସୁଇଚକୁ ସିଲେକ୍‌ଟର ବା ବାଛିବା ଯନ୍ତ୍ର କୁହାଯାଏ । ବାଛିବା ଯନ୍ତ୍ର ଦୁଇ ରକମର କାମ କରେ । ଉପରକୁ ଉଠେ, ପୁଣି ଘୂରି ଆସେ । ୧ ରୁ ୦

ପର୍ଯ୍ୟନ୍ତ ୧୦ ଟି ଥାକର ସୁଇଚ ଥାଏ । ତଳୁ ଉପରକୁ, ପୁଣି ବାଁରୁ ଡାହାଣକୁ ୦ ନମ୍ବର ଘୂରାଇଲେ, ବାଛିବା ସୁଇଚ୍‌ର ହାତଟି ଉପରକୁ ଉଠି ଦଶମ ଧାଡ଼ିକୁ ଯିବ, ସେ ଧାଡ଼ିରେ ବାଁରୁ ଡାହାଣ ଯେଉଁଠି ଫାଙ୍କାଥିବ ସେଠି ଲାଗିଯିବ । ଏହାପରେ ହିଁ ଆଉ ଗୋଟିଏ ନମ୍ବର ଗ୍ରହଣ କରିବ । ଧରନ୍ତୁ ଆମେ '୦' ପରେ '୭' ବୁଲାଇଲେ । '୦'କୁ ଠାବ



ଯେଉଁଠି ଅଟୋମେଟିକ 'ଏକ୍ସଚେଞ୍ଜ ନାହିଁ, ସେଠି ଫୋନ ଉଠାଇବା କ୍ଷଣି ଆମେ ଶୁଣୁ, "ନମ୍ବର ପ୍ଲିଜ୍" । ଅର୍ଥାତ୍ କେଉଁ ନମ୍ବର ଚାହୁଁଛ ? ଆପଣ ନମ୍ବର କହିଲେ, ସେହି ନମ୍ବର ଅପରେଟର ଲଗାଇ ଦେବ ।

କଲ୍‌ପରେ ଆଉ ଗୋଟିଏ ବାଛିବା ସୁଇଚ ସାତ ଥାକକୁ ଉଠିଯିବ । ବାଁରୁ ଡାହାଣ ଘର ଯେଉଁଠି ଫାଙ୍କା ସେଠି ଲାଗିଯିବ । ତୃତୀୟ ବାଛିବା ସୁଇଚ୍ '୭', ୪ର୍ଥ ସୁଇଚ ୪କୁ ଲଗାଇଲେ, ଭୁବନେଶ୍ୱର ସହରର ଏକ୍‌ସଚେଞ୍ଜ ମିଳିଗଲା ।

ତାପରେ ଭୁବନେଶ୍ୱରର ଯେ କୌଣସି ନମ୍ବର ଘୂରାଇଲେ, ସେହିଭଳି ସଂଯୋଗ ହେବ ।

କହିଲାବେଳେ ଲାଗୁଛି ଘଟଣାଟା ବଡ଼ ଜଟିଳ । କିନ୍ତୁ କାମରେ ଖୁବ୍ ସହଜ । ଆମେ ନମ୍ବର ବୁଲାଉ ବୁଲାଉ ସେତେବେଳେ ଏକସ୍‌ଚେଞ୍ଜ କାମ କରି ସାରିଥିବ ।



ବିଦେଶକୁ ଫୋନ୍ କରିବା ଏକ୍‌ସଚେଞ୍ଜ

ସୁଇଚର ହାତ ବୁଲୁଛି ବୋଲି କହିଲାବେଳେ ଆପଣ ଭାବୁଥିବେ ଏମିତ କଣ ଗୋଟିଏ ହାତଥାଏ ? ୧୯୭୨ ପୂର୍ବରୁ ପ୍ରକୃତରେ ଏମିତ କାମ ହେଉଥିଲା । ଯନ୍ତ୍ରର ହାତ ଘୂରୁଥିଲା ।

କିନ୍ତୁ ଆଜିକାଲି ସେସବୁ ପୁରୁଣାକାଳିଆ ହୋଇ ଗଲାଣି । ଏବେ ଇଲେକ୍‌ଟ୍ରିକ ନୁହେଁ ଇଲେକ୍‌ଟ୍ରୋନିକ କାମ କରୁଛି । ଏ ଖୁବ୍ ସୂକ୍ଷ୍ମ ଜିନିଷ । ଛୁଇଁଲା କ୍ଷଣି କାମ

କରବ । ବହୁତ ଗୁଡ଼ାଏ ବିଜୁଳି କରେଣ୍ଟ ଦରକାର ନାହିଁ । ହାତୁଡ଼ି, ପେଞ୍ଚ, ଝେଟିକିବା ବାଡ଼ି ଆଦି ଦରକାର ନାହିଁ । ଆଜିକାଲି କବାଟି (ଭଲଭ) ବା ଟ୍ରାଞ୍ଜିଷ୍ଟର ଲଗାଇ ଏସବୁ କାମ ସହଜରେ ଓ ଚଞ୍ଚଳ କରି ହେଉଛି ।

## ଏସବୁର ହିସାବ ରଖାଯାଏ

ସୁଇଚ୍‌ଗୁଡ଼ାକ ଯେମିତି ଆମେ ଡାକୁଥିବା ନମ୍ବର ପାଇଯିବ, ତହିଁରୁ ଘଣ୍ଟିକୁ ଯାଇଥିବା ତାର ବାଟେ ବିଜୁଳି ସୁଅ ଛୁଟିବ । ଘଣ୍ଟି ବାଜିବ । ସେପାଖ ଲୋକ ଫୋନ୍ ଉଠାଇବା କ୍ଷଣି ଘଣ୍ଟି ବନ୍ଦ ହେବ । ଏତିକବେଳେ ବିଜୁଳି ସୁଅ ଗୋଟିଏ ହିସାବ ଫର୍ଦ୍ଦ ଆଡ଼କୁ ଛୁଟିବ । ଡାକରା ବା କଲ ମିଳିଗଲା, ଲେଖି ହେବ । ଏହି ହିସାବ ଫର୍ଦ୍ଦରେ ଗୋଟିଏ ମାପିବା ଯନ୍ତ୍ର ଲାଗିଥାଏ । ଯାହାକୁ ମିଟର କହନ୍ତି । ଏହି ମିଟର ଫୋନ୍‌ର ନାଡ଼ି ମାପେ । କେତେ ସେକେଣ୍ଡ ଫୋନ ଚାଲୁରହିଲା ଟିପି ରଖେ । ଦୂର ଦୂରାନ୍ତର କଲ୍ ବା ଡାକରା ପାଇଁ ସେକେଣ୍ଡ ଅନୁସାରେ ମାସୁଲ ଦେବାକୁ ପଡେ ଏସବୁ ମାସୁଲ ସ୍ଥାନୀୟ (ଲୋକାଲ୍) କଲ୍ ହିସାବରେ ଗଣା ଯାଏ । କଟକ ସହର ଭିତରେ ଆମେ ଫୋନ୍ କଲେ, ଥରେ ଫୋନ୍ କରିବାକୁ ଲୋକାଲ୍ କଲ୍‌କୁହାଯିବ । ଯେତେ ସମୟ ଲାଗୁ, ଚିନ୍ତା ନାହିଁ । ଗୋଟିଏ ଲୋକାଲ କଲର ମାସୁଲ ଏକ ଟଙ୍କା ।

ଲୋକାଲ କଲ ସହିତ ସମାନ କରିବା ପାଇଁ ମିଟରର ଘଡ଼ି ଖଞ୍ଜା ଯାଇଛି । ୨୦ କିଲୋମିଟର ପର୍ଯ୍ୟନ୍ତ କଲର ସମୟ ସୀମା ନାହିଁ । ୨୦ରୁ ୫୦ କିଲୋମିଟର ଭିତରେ ପ୍ରତି ୩୬ ସେକେଣ୍ଡକୁ ଗୋଟିଏ କଲ ଧରାଯାଏ । ଯଦି ରାତି ୭ଟାରୁ ସକାଳ ୮ଟା ଭିତରେ ଫୋନ କରିବା; ପ୍ରତି ୪୮ସେକେଣ୍ଡକୁ ଗୋଟିଏ କଲ ଧରାଯିବ । ଅଗଷ୍ଟ ୧୫, ଜାନୁଆରୀ ୨୬ ବା ଅକ୍‌ଟୋବର ୨, ଜାତୀୟ ଛୁଟି ଦିନରେ ଯେତେବେଳେ ଫୋନ କଲେ ବି ୪୮ ସେକେଣ୍ଡକୁ ଗୋଟିଏ କଲ ଧରାଯିବ ।

ଦୂରତା ବଢିଲେ ସେକେଣ୍ଡ ପରିମାଣ କମିବ । ୫୦ରୁ ୧୦୦ କିଲୋମିଟର ଭିତରେ ୧୨ ସେକେଣ୍ଡ, ତାପରେ ୨୦୦ କି. ମି. ପର୍ଯ୍ୟନ୍ତ ୮ ସେକେଣ୍ଡ, ତାପରେ ୫୦୦ କି.ମି. ପର୍ଯ୍ୟନ୍ତ ୪ ସେକେଣ୍ଡ, ତାପରେ ୧୦୦୦ କି.ମି. ପର୍ଯ୍ୟନ୍ତ ୩ ସେକେଣ୍ଡ । ୧୦୦୦ରୁ ବେଶି କି ମି· ହେଲେ ୨ ସେକେଣ୍ଡକୁ ଗୋଟିଏ କଲ୍ ଧରାଯିବ । ରାତି ବା ଉକ୍ତ ଛୁଟି ଦିନରେ ଏହାର ଦୁଇ ଗୁଣ ସମୟକୁ ଗୋଟିଏ କଲ ଧରାଯାଏ ।

ବିଦେଶ ପାଇଁ ଏହି କଲର ଦର ଆହୁରି ବେଶି । ବିଲାତ ଆମେରିକା ବା କାନାଡ଼ା ପାଇଁ ପ୍ରତି ସେକେଣ୍ଡକୁ ଗୋଟିଏ କଲ୍ ଗଣାଯାଏ ।

ଆମର ମନେରଖିବା କଥା ସିଧାସଳଖ ଗରାଖ ଫୋନ କଲେ ଯେତେ ବେଶି ସମୟ ଗଡ଼ିବ ତେତେ ବେଶି ପଇସା ପଡ଼ିବ । ଅନ୍ୟମାନେ ଫୋନ୍ କରିବା ସୁବିଧା ତେତିକି ସମୟ ଯାଏ ପାଇବେ ନାହିଁ । ତେଣୁ ଚୁମ୍ବକରେ କହିଲେ

ପଇସା କମ ଖର୍ଚ୍ଚ ହେବ, ଅନ୍ୟମାନେ ବ ଫୋନ୍ କରିବାକୁ ସମୟ ପାଇବେ ।



ଆଧୁନିକ ସୁଇଚ୍‌ବୋର୍ଡ଼ ବା ଖଟକା ପଟା । ଇଲେକ୍‌ଟ୍ରୋନିକ ବ୍ୟବସ୍ଥା । ଏଥିରେ ୧୦ ଲାଇନର ଏକ୍‌ସଚେଞ୍ଜ ଅଛି, ଏଥିରୁ ୫୦ଟି ଅଧିକା (ବା ଏକ୍‌ସ୍‌ଟେନ୍‌ସନ୍) ଲାଇନ ନେଇ ହେବ ।

## ମିଟର ଆଉ ଅପରେଟର

ବେଳେ ବେଳେ ଯେତେ ଚେଷ୍ଟା କଲେ ବ ଗରାଖ ସିଧା ସଳଖ ଲାଇନ୍ ପାଏ ନାହିଁ । ସ୍ୱୟଂ ଚାଳିତ ଏକ୍‌ସଚେଞ୍ଜ

ଖରାପ ହୋଇଯାଇ ପାରେ । ତେଣୁ ଏକ୍‌ସଚେଞ୍ଜର ଅପରେଟର କରିଆରେ କଲ୍ ମାଗିବାକୁ ହୁଏ । ଏହାକୁ ଟ୍ରଙ୍କ୍ ବୁକିଙ୍ଗ କୁହାଯାଏ । ଦୂର ରାସ୍ତାକୁ ଇଂରାଜୀରେ ଟ୍ରଙ୍କ କୁହାଯାଏ । ଯଥା—କଲକତା ପୁରୀ ରାସ୍ତାକୁ ଗ୍ରାଣ୍ଡଟ୍ରଙ୍କ ରୋଡ୍ କୁହା ଯାଉଥିଲା ।

ଅପରେଟର ଫୋନ୍ କରିବା ସମୟକୁ ହିସାବ କରି ମାସୁଲ ଦାବି କରେ । ବିଲ୍ ଆକାରରେ ତାହା ଗରାଖ ପାଖକୁ ପଠାଏ । ଫୋନ୍ ମାସୁଲ ଛଡ଼ା ଫୋନ ଯନ୍ତ୍ରର ଭଡ଼ା ମଧ୍ୟ ଦେବାକୁ ପଡ଼େ । ଆମ ଦେଶରେ ଫୋନଯନ୍ତ୍ର ସରକାର ଯୋଗାନ୍ତି ଡାକ ବିଭାଗ କରିଆରେ । କେତେକ ଦେଶରେ ଟେଲିଫୋନ କମ୍ପାନି ଏହା କରୁଥାନ୍ତି । ଆମ ଦେଶର କଲକତା, ଦିଲ୍ଲୀ ଭଳି ବଡ଼ ନଗରରେ ଟେଲିଫୋନ ନିଗମ କରାଯାଇଛି । ଏମାନେ କମ୍ପାନି ଭଳିଆ କାମ କରନ୍ତି ।

ଯେଉଁଠି ଗରାଖ ସିଧା ସଳଖ ଫୋନପାଏ, ସେ ମିଟର ଯନ୍ତ୍ର କଲ୍ ହିସାବ ରଖେ । ବିଜୁଳିର ପଲ୍‌ସ ବା ଚମକ ପରିମାଣ ଉପରେ ମିଟର ହିସାବ କରେ । ସମୟ ଓ ଦୂରତା ଉପରେ ହିସାବ କରାଯାଏ । ଯେତେ ଦୂର ବଢ଼ିବ ମାସୁଲ ତେତେ ବଢ଼ିବ । ଛୁଟି ଦିନରେ ଓ ରାତିରେ ମାସୁଲ କମ ପଡ଼େ ।

ଛୁଟି ଦିନରେ ବା ରାତିରେ ମାସୁଲ କମ ବୋଲି ମିଟର ଜାଣିବ କିପରି ? ସେ ସମୟରେ ପଲ୍‌ସ ରେଟ୍ ବା ଚମକ

ହାରକୁ ଧୀର କରି ଦିଆଯାଏ । ତେଣୁ ଦୁଇଗୁଣ ସମୟକୁ ମିଟର ଗୋଟିଏ କଲ ବୋଲି ହିସାବ କରିଥାଏ ।



ଟେଲିଫୋନ୍ ଏକ୍ସଚେଞ୍ଜରେ ଅପରେଟରଙ୍କ ଭିତରେ ପୁଅଙ୍କ ଅପେକ୍ଷା ଝିଅ ବେଶୀ ।

## ବେଶି କଥା କହିବା ଟେଲିଫୋନ୍

ଫୋନ୍‌ରେ ଆମ ମୁହଁ ପାଖରେ ଯେଉଁ ଯନ୍ତ୍ରଟା ତା ନାଁ ମାଇକ୍ରୋଫୋନ୍ । ଅର୍ଥାତ୍ ସୂକ୍ଷ୍ମ ଫୋନ୍ । ଏଥିରେ କହିବା-ବେଳେ ଯେଉଁ ବିଦ୍ୟୁତ୍ କରେଣ୍ଟ ତିଆରି ହୁଏ, ତାହା ଖୁବ୍ କ୍ଷୀଣ । ବେଶି ବାଟ ଗଲେ ଆହୁରି କ୍ଷୀଣ ହୋଇ-

ଯାଏ; ଶୁଭେ ନାହିଁ । ତେଣୁ ମଝିରେ ମଝିରେ ଏହି କରେଣ୍ଟକୁ ବଢ଼ାଇବା ଦରକାର ପଡ଼େ ।

ଫୋନ୍ ଲାଇନର କରେଣ୍ଟକୁ ଜୋର କରିବା କାମକୁ ବୁଷ୍ଟର କହନ୍ତି । ରାସ୍ତାକଡ଼ରେ ପ୍ରାୟ ୫ କି. ୧୦ କିଲୋମିଟର ଦୂରରେ ଏମିତି ବୁଷ୍ଟର ଷ୍ଟେସନ ଥାଏ । ଏହି ଷ୍ଟେସନକୁ ରିପିଟର ବି କହନ୍ତି । କାରଣ ରିପିଟ କରେ । ଅର୍ଥାତ୍ କରେଣ୍ଟକୁ ବଢ଼ାଇ ଦିଏ । ରେଡ଼ିଓରେ ଯେମିତି ଶବ୍ଦ ବଢ଼ାଇବା ଯନ୍ତ୍ର ବା ଆମ୍ପ୍ଲିଫାୟର ଅଛି, ଏହି ଷ୍ଟେସନରେ ସେମିତି ଯନ୍ତ୍ର ଥାଏ ।

ସାଧାରଣତଃ ପ୍ରତି ୫୦ କିଲୋମିଟରରେ ଗୋଟିଏ ରିପିଟର ରହିଲେ ଚଳିବ । କିନ୍ତୁ ବିଶେଷ କାମ ପାଇଁ ୧୦ କିଲୋମିଟର ଦୂରରେ ଗୋଟିଏ ଲେଖାଏ ରିପିଟର ଷ୍ଟେସନ ରହିବା ଦରକାର ହୁଏ ।

ଅଳ୍ପ ଦୂରକୁ ଟେଲିଫୋନ୍ କଲେ ଆମ ସ୍ୱରଟା ସିଧା ସଳଖ ତାରରେ ଚାଲିଯାଏ । ଏହା "ଭଏସ ଫ୍ରିକ୍ୱେନ୍‌ସି" । ଆମର କଥା ମାଇକ୍ରୋଫୋନ୍‌ରେ ଯେମିତି ତରଙ୍ଗ ତିଆରି କରେ ତାରରେ ସେଇମିତି ତରଙ୍ଗ ଯାଏ । ଏମିତି ବ୍ୟବସ୍ଥାରେ ହିଲେ ତାର ମାତ୍ର ଗୋଟିଏ କଥାବାର୍ତ୍ତା ବୋହି ନେଇପାରେ । ଜଣେ କହିବ, ଆଉ ଜଣେ ଶୁଣିବ, ଅନ୍ୟ-ଜଣକ କହିଲେ ପ୍ରଥମ ଜଣକ ଶୁଣିବ ।

ଖୁବ୍ ଦୂରକୁ ଟେଲିଫୋନ୍ କଲେ ଆଉ ଗୋଟିଏ ବ୍ୟବସ୍ଥା କରାଯାଏ । ଏହାକୁ 'କାରିଅର ଟେଲିଫୋନ୍'

କରନ୍ତି । କଥା କହିଲେ ସ୍ୱର ତରଙ୍ଗ ବା ଭଏସ୍ ଫ୍ରିକ୍ୱେନ୍ସି ହିସାବରେ ନ ଯାଇ ଉଚ୍ଚ ତରଙ୍ଗର ସଙ୍କେତ ଭାବେ ଯାଏ ।



ଗୋଟିଏ ହାତଚଳା ସୁଇଚ ବୋର୍ଡ । ଖଟକା ଥାକ । ଏଥିରେ ୫୦ଟି ଗ୍ରାହକଙ୍କ ଫୋନ୍ କଣ୍ ହେଉଥିଲା । ପ୍ରତି ଗ୍ରାହକର ଫୋନ ତାର ଗୋଟିଏ ଖୋପରେ ଶେଷ । ସେ ଫୋନ ଉଠାଇବା କ୍ଷଣି ଖୋପ ଉପରେ ଆଲୁଅଟିଏ ଜଳୁଥିଲା । ତାକୁ ଦେଖି ଅପରେଟର ଜଣକ ଦରକାରୀ ନମ୍ବରର ତାର ଅଗଟିକୁ ଖୋପରେ ଭେଞ୍ଜି ଦେଉଥିଲା । ଦୁଇ ଜଣକ ଲାଇନ ଯୋଡ଼ ହେଉଥିଲା । ଦୁହେଁ କଥାବାର୍ତ୍ତା କରୁଥିଲେ ।

ଗୋଟିଏ କଣ୍ଡକ୍ଟର ବା ପଣବାହୀ ନଳୀରେ ଗୁଡ଼ାଏ କଥା-ବାର୍ତ୍ତା ଯାଇପାରେ । ନଳୀ ଶେଷ ଭାଗରେ ପ୍ରତି କଥାବାର୍ତ୍ତା ଭିନ୍ନ ଭାବରେ ଗ୍ରହଣ କରାଯାଏ ସତେ ଯେମିତି ନଳୀ ଭିତରେ ରେଡ଼ିଓ ସଙ୍କେତ ଯାଏ ।



ଋପିଟର ଷ୍ଟେସନରେ ଏହି ନଳୀର ସବୁ କଥାବାର୍ତ୍ତାର ଜୋର ବଢ଼ାଇ ଦିଆଯାଏ । କୌଣସି କଥାବାର୍ତ୍ତା ଅନ୍ୟ କଥାବାର୍ତ୍ତା ସାଙ୍ଗରେ ମିଶି ଯାଏନାହିଁ । ଗୁଡ଼ାଏ ପତଳା ତାର ଥିବା ନଳୀକୁ କେବ୍‌ଲ କହନ୍ତି । ଗୋଟିଏ କେବ୍‌ଲରେ ଏକା ସାଙ୍ଗରେ ହଜାର ହଜାର କଥାବାର୍ତ୍ତା ଯାଇ ପାରିବ ।

ଗୋଟିଏ ନରମ ଧାତୁ ନଳୀର କେନ୍ଦ୍ର ଦେଇ ଗୋଟିଏ ପଣବାହୀ ନଳୀ ଯାଇଥାଏ । ଯେମିତି ଆମ ଟେଲିଭିଜନ ଏରିଆଲରୁ ଟେଲିଭିଜନ ସେଟ୍‌କୁ ତାରନଳୀ ଆସିଥାଏ ।

ଏ ପ୍ରକାର ତାରନଳୀକୁ ଏକ କେନ୍ଦ୍ରିକ ନଳୀ ବା କୋଏ-କ୍ସିଆଲ କେବ୍‌ଲ କୁହାଯାଏ ।

ଗୋଟିଏ ପତ୍ରବାହୀ ତାର ପ୍ଲାଷ୍ଟିକ ଖୋଲ ଭିତରେ ପଶିଥାଏ । ପ୍ଲାଷ୍ଟିକ ଖୋଲ ଉପରେ ତମ୍ବା ପାତର ଖୋଳ ଥାଏ । ତମ୍ବାଖୋଳ ପୁଣି ପ୍ଲାଷ୍ଟିକ ଖୋଲ ଭିତରେ ଥାଏ । ସବୁଗୁଡ଼ିକୁ ମିଶାଇ କୋଏକ୍‌ସିଲ୍ କେବ୍‌ଲ ହୁଏ ।

ଏ ପ୍ରକାର ପତ୍ରବାହୀ ବା କାଶଅର ଟେଲିଫୋନ ସ ସବୁଠି କାମ କରେ ନାହିଁ । ଘଞ୍ଚ ଜଙ୍ଗଲରେ, ପାଣି ଭିତରେ କମ୍ବା ଦୁର୍ଗମ ଅଞ୍ଚଳରେ କେବଲ ବସାଇବା କଷ୍ଟକର । ସେଠାରେ ଆଉ ଗୋଟିଏ ଉପାୟ କରାଯାଏ ।

ସେଠାରେ ରେଡ଼ିଓ ଦ୍ୱାରା ଖବର ପଠାଯାଏ । ଏହି ତରଙ୍ଗକୁ ଅତି ଉଚ୍ଚ ତରଙ୍ଗ ବା ଉଲ୍‌ଟ୍ରା ହାଇ ଫ୍ରିକ୍ୱେନ୍‌ସି (ସଂକ୍ଷେପରେ ୟୁ ଏଚ୍ ଏଫ୍) କୁହାଯାଏ ।

ଆମ ରାଜ୍ୟରେ ପୋଲିସ କର୍ମଚାରୀମାନେ ଛୋଟ ଛୋଟ ରେଡ଼ିଓ ସାହାଯ୍ୟରେ କଥା ବାର୍ତ୍ତା କରନ୍ତି । ଚଳ ବୁଲ ଅବସ୍ଥାରେ ଅଳ୍ପ ଦୂରରେ କଥାବାର୍ତ୍ତା କରିବା ସହଜ । ରାସ୍ତାରେ ଗୋଟିଏ କୋଣରୁ ଆଉ ଗୋଟିଏ କୋଣକୁ ଖବର ପଠାଇବାକୁ, ଗୋଟିଏ ଥାନାରୁ ପାଖ ଥାନାକୁ ଖବର ପଠାଇବାକୁ ଏହି ପ୍ରକାର ରେଡ଼ିଓ ତରଙ୍ଗ ବ୍ୟବହାର କରାଯାଏ । ଏହାକୁ ଭେରି ହାଇ ଫ୍ରିକ୍ୱେନ୍‌ସି ବା ସଂକ୍ଷେପରେ ଭି ଏଚ୍ ଏଫ୍ କୁହାଯାଏ ।

# ସମୁଦ୍ର ଭିତରେ ବି ତାର

ୟୁରୋପରୁ ଆମେରିକାକୁ କି ଭାରତରୁ ସିଙ୍ଗାପୁରକୁ ଟେଲିଫୋନ୍ କରିବା ପାଇଁ ସମୁଦ୍ର ଭିତରେ ବି ତାର ବନ୍ଧା ଯାଇଥାଏ । ସତ କଥା କହିବାକୁ ଗଲେ ପୃଥିବୀ ସାରା ସମୁଦ୍ର ଭିତରେ ତାର ଯାଇଛି ।

ସମୁଦ୍ର ତଳେ ଯେଉଁ କେବଲ ବିଛା ହୋଇଥାଏ, ସେଥିରେ ବି ରିପିଟର ଯନ୍ତ୍ର ଖଞ୍ଜା ଯାଇଥାଏ । ଆଟଲାଣ୍ଟିକ ମହାସାଗରରେ ବିଛା ହୋଇଥିବା କେବ୍ଲର ପ୍ରତି ୩୫ ମାଇଲ (୫୬ କିଲୋମିଟର) ଦୂରରେ ଗୋଟିଏ ଲେଖାଏଁ କୁନ୍ଦ ଥାଏ । ଏହି କୁନ୍ଦରେ କ୍ଷୀଣ ଶବ୍ଦକୁ ଜୋର ଶବ୍ଦ କରିବାର ଯନ୍ତ୍ର ଥାଏ ।

ପାଣି ଭିତରେ ଏହି ଯନ୍ତ୍ରକୁ ବାରମ୍ବାର ସଜାଡ଼ିବା କଷ୍ଟକର । ତେଣୁ ଏଥିରେ ଏମିତି ବାଟେରୀ ଦିଆଯାଇଥାଏ ଯେ ଶବ୍ଦ ବଢ଼ାଇବା ଯନ୍ତ୍ର ବା ଆମ୍ପ୍ଲିଫାୟର ପ୍ରାୟ ୨୦ ବର୍ଷ ଯାଏ ସୁରୁଖୁରୁରେ କାମ କରେ ।

ଥରେ ଏହି ଆମ୍ପ୍ଲିଫାୟର ଖରାପ ହେଲେ, ଜାଲ ପକାଇ ତାକୁ ଉପରକୁ ଅଣାଯାଏ । କଟାଯାଇ ନୂଆ ରିପିଟରଟିଏ ଲଗାଯାଏ । ପୁଣି ଥରେ ପାଣିତଳେ ବିଛା-ଯାଏ ।

ଏହି ଶରିରର ଯନ୍ତ୍ର ତିଆରି ବେଳେ ବା ମରାମତି ବେଳେ ଟିକେ ହେଲେ ପାଣି ବ ବାଜିବା କଥା ନୁହେଁ । ଝାଳ କି ବର୍ଷାର ପବନ ବ ବାଜିବା କଥା ନହେଁ । ହସପିଟାଲରେ ଯେମିତି ସଫାସୁତୁରା ଓ ଥଣ୍ଡା ହେବା କଥା ସେମିତି ଜାଗାରେ କାମ କରାଯାଏ । ଶରିରକ ଏମିତି ଖୋଲରେ ରଖାଯାଏ ଯେମିତି ମୋଟା ମୋଟା ହାତୁଡ଼ିରେ ପିଟିଲେ ବ ଭାଙ୍ଗିବ ନାହିଁ କି ଫାଟିବ ନାହିଁ । କାହିଁକି କହିଲ ? ସମୁଦ୍ର ତଳେ ତ ଏହା ବିଛା ହେବ । ତାପରେ ସାତତାଳ କି ଆଠତାଳ ନୁହେଁ, ଶହଶହ ତାଳ ପାଣି ଥିବ । ଏତେ ଓଜନର ପାଣି ସମ୍ଭାଳିବା ଦରକାର । ଟିକେ କୋଉଠି ଫାଙ୍କା, ଛୁଆଁ ସକାଶେ ଥିଲେ ବ ପାଣି ପଶିଯିବ । ଶରିରର ଖରାପ ହୋଇଯିବ ।

## ନୂଆ ନୂଆ କଥା ଶୁଣାଯାଉଛି

ଯୁଗ ବଦଳୁଛି । କାଲି ଯାହା ଅସମ୍ଭବ ଥିଲା ଆଜି ସମ୍ଭବ ହେଉଛି । ସପନ ସତ ହେଉଛି ।

୧୯୫୭ ମସିହାରୁ ବିଲାତ ଓ ଆମେରିକା ମଧ୍ୟରେ କେବଳ ରେଡ଼ିଓରେ ଟେଲିଫୋନ୍ କଥା ହେଉଥିଲା । ପାଗ ଭଲ ନଥିଲେ ରେଡ଼ିଓ କାମ କରୁନଥିଲା ।

ପାଗ ଖରାପ ଥିଲେ ରେଡ଼ିଓ ଘଡ ଘଡ଼ ଚଡ଼ ଚଡ଼ କରେ । ଆମେ ବର୍ଷାଦିନେ ରେଡ଼ିଓ ଖୋଲିଲେ ଏକଥା

ଦେଖୁ । ୧୯୫୬ରେ ପ୍ରଥମେ ନୂଆ ପ୍ରକାରର କେବ୍ଲ ବସିଲା । ଖରାପ ପାଗ ଥିଲେ ବ ଚଡ଼ ଚଡ଼ ଘଡ ଘଡ ଶବ୍ଦ ହେଲା ନାହିଁ। ବିଲାତ ଓ ଆମେରିକା ଭିତରେ ସମୁଦ୍ର ତଳେ ୩୬ଟି ନୂଆ ତାର ଥିବା କେବ୍‌ଲ ବସିଲା, ଟେଲିଫୋନ ସୁବିଧା ହେଲା । ଥରକେ ହଜାରରୁ ବେଶି ଜଣ କଥାବାର୍ତ୍ତା କରି ପାରିଲେ । ଟେଲିଭିଜନ କାର୍ଯ୍ୟକ୍ରମ ମଧ୍ୟ ପଠାଇ ହେଲା ।

ଆପଣ ପଚାରିବେ, ରେଡିଓରେ କାହିଁକି ଖବର ଚଲି ନାହିଁ ? ଏହାର କାରଣ ବୁଝିବା ଦରକାର ।



[ ବଡ଼ ବଡ଼ ଅଫିସରମାନଙ୍କ ପାଇଁ ସ୍ୱତନ୍ତ୍ର ଟେଲିଫୋନ। ଫୋନ ଖବରକୁ ଗୁପ୍ତ ରଖିବା ଯନ୍ତ୍ର ମଧ୍ୟ ଏଥିରେ ଅଛି । ଟେଲେକ୍ସ ଯନ୍ତ୍ରଠାରୁ ୦ଗୁଣ ଜୋରରେ କାମ କରେ । ]

ବିଜୁଳି ଶକ୍ତି ଆଲୋକ ଶକ୍ତି ଭଳି। ସିଧାସଳଖ ରାସ୍ତାରେ ଯାଏ । ବାଟରେ ଖାଲୁଆ ଜାଗା ପଡ଼ିଲେ, ବିଜୁଳି ତରଙ୍ଗ ତଳକୁ ଖସେ ନାହିଁ । ବାଟରେ ବାଧା ଥିଲେ ବିଜୁଳି ତରଙ୍ଗ ସେଇଠୁ ଫେରି ଆସେ ।

ଆମେ ଠିଆ ହୋଇ ଦେଖିଲେ ପୃଥିବୀ ଘେରଟା ଚେପଟା ଦିଶେ । ପୁଣି କିଛି ଦୂରରେ ଆକାଶ ସାଙ୍ଗେ ମିଶିଗଲା ଭଳି ଲାଗେ । ଯେଉଁଠି ଆକାଶ ପୃଥିବୀ ମିଶି ଥାଏ ତାହା ଦିଗବଳୟ । ଆମେ ଯେତେ ଉପରକୁ ଉଠିବା ଦିଗବଳୟଟା ସେତେ ଦୂରକୁ ଘୁଞ୍ଚିବ । ଏହାର କାରଣ କଣ ? ପୃଥିବୀଟା ଗୋଟିଏ ପ୍ରକାଣ୍ଡ ପେଣ୍ଡୁ । ପୃଥିବୀକୁ ଏଇଥିପାଇଁ ଗୋଲକ କୁହାଯାଏ । ଭଗବାନ ଏହି ଗୋଲକରେ ବୁଲାବୁଲି କରନ୍ତି ବୋଲି ତାଙ୍କ ନାଁ ଗୋଲକ-ବିହାରୀ ।

ପୃଥିବୀଟା ଗୋଲ ହୋଇଥିବାରୁ ଏହାର ଉଚ୍ଚଜାଗାରୁ ବିଜୁଳି ତରଙ୍ଗ ପଠାଇଲେ, ଉପରେ ଉପରେ ଚାଲିଯିବ । ପେଣ୍ଡୁର ଢାଲୁଆ ଜାଗାକୁ ଯିବ ନାହିଁ । ଏହି କାରଣରୁ ବିଲାତରୁ ପେଡ଼ିଓ ତରଙ୍ଗ ଆମେରିକା ଭୂଇଁକୁ ଯିବ ନାହିଁ —ଆମେରିକାର ବହୁତ ଉପରେ ଭାସି ଚାଲିଯିବ ।

ଏବେ ଆମେ ବୁଝୁଛୁ, ବେତାର ଓ ଟେଲିଭିଜନ ପ୍ରଚାର ପାଇଁ କାହିଁକି ଉଚ୍ଚ ଖୁଣ୍ଟ କରାଯାଏ । ଏହାର ଉଚ୍ଚରୁ ଯେଉଁ ତରଙ୍ଗ ତଳଆଡ଼କୁ ଆସେ ତାହା ବହୁତ ଦୂର ଯାଇପାରେ ।

ବିଜୁଳି ବା ଆଲୋକ ତରଙ୍ଗ ସରଳରେଖାରେ ଗତି କରେ । ବିଲାତ ଓ ଆମେରିକା ମଝିରେ ଆଟଲାଣ୍ଟିକ ମହାସାଗର । ଏଥିରେ ଜାହାଜ ରଖି ଖମ୍ବ ବସାଇବାକୁ ପଡ଼ନ୍ତା । ହିସାବ କରି ଦେଖାଯାଇଛି, ଆଟଲାଣ୍ଟିକରେ ୧୦୦ରୁ ଅଧିକ ଜାହାଜ ରଖି ପ୍ରତିଟିରେ ୧୦୦ ଫୁଟ ଉଚ୍ଚର ଖମ୍ବ ବସାଇ ତହିଁରେ ବିଜୁଳି ତରଙ୍ଗ ପଠାଇବାକୁ ପଡ଼ିବ । ଖର୍ଚ୍ଚ ତ ଖର୍ଚ୍ଚ ! କେତେ ଅସୁବିଧା ହୁଅନ୍ତା, ଭାବନ୍ତୁ ତ !

ଏସବୁ କାମ କରିବାକୁ ଖୁବ୍ ଉଚ୍ଚ ଖମ୍ବଟିଏ ହେଲେ ଚଳିବ । ଦଶ ବାର କିଲୋମିଟର କି ବେଶି ଉଚ୍ଚର ଖମ୍ବ ତ ହୋଇପାରିବ ନାହିଁ । ତେଣୁ ଚନ୍ଦ୍ର ଭଳି ଗୋଟିଏ ଜିନିଷ ପୃଥିବୀ ଉପରେ ଝୁଲୁଥିଲେ ବଢ଼ିଆ ହେବ । ଏଇଥିରୁ ଆସିଲା ଉପଗ୍ରହ କଥା ।

# ଉପଗ୍ରହ ଜରିଆରେ ଯୋଗାଯୋଗ

ସୂର୍ଯ୍ୟ ଗୋଟିଏ ତାରକା । ତା' ଚାରିପଟେ ଯେଉଁ ଗ୍ରହ ବୁଲୁଛନ୍ତି ସେଥିରୁ ଆମ ପୃଥିବୀ ଗୋଟିଏ ଗ୍ରହ । ଗ୍ରହ ଚାରିପଟେ ଯଦି କିଛି ବୁଲୁଥାଏ ତାକୁ କୁହାଯାଏ ଉପଗ୍ରହ । ଚନ୍ଦ୍ର ପୃଥିବୀର ଗୋଟିଏ ଉପଗ୍ରହ । ଭଗବାନ ଏହା ତିଆରି କରିଛନ୍ତି ।

ଆଜିକାଲି ମଣିଷ ପ୍ରକାଣ୍ଡ ହାବେଳୀ ତିଆରି କରି ଖୁବ୍ ଉଚ୍ଚକୁ ଯନ୍ତ୍ରପାତି ପଠାଉଛି । ଯନ୍ତ୍ରପାତି ଥିବା ଜିନିଷଟି ପୃଥିବୀ ଚାରିପଟେ ଘୂରୁଛି । ତେଣୁ ଏହା ଗୋଟିଏ କୃତ୍ରିମ ଉପଗ୍ରହ ବା ମଣିଷ ତିଆରି ଚନ୍ଦ୍ର ହୋଇଯାଉଛି । ଏହି ଉପଗ୍ରହ ଗୋଟିଏ ଉଚ୍ଚରେ ଥିବା ଖମ୍ବ ଭଳି କାମ କରୁଛି । ପୃଥିବୀ ପୃଷ୍ଠରୁ ଗୋଟିଏ ଜାଗାରୁ ବିଜୁଳି ତରଙ୍ଗ ପଠାଇ ଏଥିରେ ଧକ୍କା ଦିଆଯାଉଛି । ଧକ୍କା ପାଇ ସେହି ତରଙ୍ଗ ପୁଣି ପୃଥିବୀର ଆଉ ଗୋଟିଏ ଜାଗାକୁ ଫେରୁଛି ।

ବ୍ୟାଟେରୀ ବା ସେଇଭଳି ଶକ୍ତି ଯୋଗାଇଲେ ଉପଗ୍ରହ ବି ଆମ ବିଜୁଳି ତରଙ୍ଗକୁ ଗ୍ରହଣ କରି ଆମେ ଯେଉଁଠିକୁ ଚାହିଁବା ସେଇଠିକି ପଠାଇବ । ପଠାଇବାର ଜ୍ୟାମିତିକ କୋଣ ଉପରେ ଏହା ନିର୍ଭର କରେ ।

ଆମ ଦେଶର ଟେଲିଭିଜନ ଦିଲ୍ଲୀରୁ ସିଧା ଇନସାଟ୍ 'ଖ' ନାମକ ଉପଗ୍ରହକୁ ଯାଉଛି । ସେଠାରୁ ଫେରି ମାନ୍ଦ୍ରାଜ, କଟକ, ସମ୍ବଲପୁର, ବମ୍ବେ ଆଦି ବିଭିନ୍ନ ସ୍ଥାନକୁ ଆସୁଛି ।

ଏଭଳି ଉପଗ୍ରହ ପ୍ରଥମେ ୧୯୬୨ରେ କାମ କଲା--ତା ନାଁ ଥିଲା ଟେଲଷ୍ଟାର-୧ । ଆମେରିକା ସରକାର ପଠାଇ-ଥିଲେ । ଏବେ ଏମିତିକା ବହୁତ ଉପଗ୍ରହ ଆକାଶରେ ଖୁବ୍ ଉଚ୍ଚରେ ଘୂରୁଛି ।

ଯେଉଁ ଦେଶର ନିଜ ଉପଗ୍ରହ ନାହିଁ, ସେ ଅନ୍ୟ ଦେଶର ଉପଗ୍ରହକୁ ଭଡ଼ାରେ ନେଉଛି । ଗୋଟିଏ ଗୋଟିଏ ଉପଗ୍ରହରେ ବହୁତ ଗୁଡ଼ିଏ ନଳୀ ବା ଖୋପ ରହିଛି । ପ୍ରତି ଖୋପ ଗୋଟିଏ ଗୋଟିଏ ପ୍ରକାରର ତରଙ୍ଗ ପଠାଇବ । ପୁରା ଉପଗ୍ରହକୁ ଭଡ଼ା ନ ନେଇ ଗୋଟିଏ କି ଦୁଇଟା ଖୋପ ବା ଚ୍ୟାନେଲ୍ ଭଡ଼ା ନେଇ ହେବ ।



# ସମସ୍ତେ ସମସ୍ତଙ୍କୁ ଦେଖି ପାରିବେ

ପୃଥିବୀଟା ଗୋଲ ହୋଇଥିବାରୁ ଗୋଟିଏ ଉ ଗ୍ରହରେ ସାରା ପୃଥିବୀକୁ ଟେଲିଭିଜନ ବା ଟେଲିଫୋନ ଯୋଗାଇ ହେବ ନାହିଁ ।

ଏଥିଲାଗି ପୃଥିବୀ ଚାରିପଟେ ଅତି କମରେ ୩ଟି ଉପଗ୍ରହ ରଖିବାକୁ ପଡ଼ିବ । ପୃଥିବୀର ମେଖଳା ବା ବିଷୁବବୃତ୍ତ ଉପରେ ସମାନ ସମାନ ଦୂରରେ ୩ଟି ଉପଗ୍ରହ ରହିବ । ପ୍ରତ୍ୟେକ ୨୨୩୦୦ ମାଇଲ ବା ୩୫୬୦୦ କିଲୋମିଟର ଉଚ୍ଚରେ ରହିବ । ଏତେ ଉଚ୍ଚରେ ରହିଲେ ହିଁ ପୃଥିବୀକୁ ଚାରିପଟେ ଆକାଶର ତଳଭାଗରୁ ଭଲେ ମାଡ଼ିବସି ପାରିବ ।

କେବଳ ସେତିକି ନୁହେଁ । ଉପଗ୍ରହ ଉଡୁଥିଲେ ବି ଗୋଟିଏ ଜାଗାରେ ଝୁଲି ପଡ଼ି ରହିଥିବା ଦରକାର । ଆମକୁ ଏପରି ଦେଖାଯିବ । ଏହିଭଳି ସ୍ଥିର ହୋଇ ରହିବା ଲାଗି ଉପଗ୍ରହଟି ପୃଥିବୀ ଚାରିପଟେ ପ୍ରତିଦିନ ଥରେ ଘୂରିବା ଦରକାର । ପୃଥିବୀ ତା ଅକ୍ଷ ଚାରିପଟେ ଦିନକରେ ଥରେ ଘୂରୁଛି । ପୃଥିବୀ ଓ ଉପଗ୍ରହର ଗତି ସମାନହେଲେ ଭୂପୃଷ୍ଠରୁ ଦେଖାଯିବ ଯେପରି ଉପଗ୍ରହଟି ଗୋଟିଏ ଜାଗାରେ ରହିଛି । ତେଣୁ ଭୂଇଁରୁ ବିଜୁଳି ସଙ୍କେତ ପଠାଇବାକୁ ସୁବିଧା ହେବ ।

ତିନୋଟିଯାକ ଉପଗ୍ରହ ବିଷୁବ ରେଖା ଉପରେ ସମାନ ଦୂରତାରେ ରହି ଘୂରୁଥିବେ ତ ଗୋଟିକରୁ ଆଉ ଗୋଟିକୁ ତରଙ୍ଗ ପଠା ହେବ । ତା ହେଲେ ଯେ କୌଣସି ଦୃଶ୍ୟକୁ ସାରା ପୃଥିବୀରେ ଟେଲିଭିଜନରେ ଦେଖି ହେବ ।



[ନୂଆ ପ୍ରକାରର ସଞ୍ଚାର ବ୍ୟବସ୍ଥା]



## ଉପଗ୍ରହ

ଖୁବ୍ ପତଳା ଆଲୁଅ ସୂଅ, ଛୁଞ୍ଚ ମୁନଠାରୁ ପତଳା କାଚ ତାର ଭିତରେ ଯାଇପାରେ । ଏହି ଆଲୁଅ ସୂଅକୁ ଲେଜର ଆଲୁଅ କୁହାଯାଏ । ୬୨୫ଟି ତମ୍ବା ତାରରେ ଯେତେ ଫୋନ ଯାଇପାରେ ଗୋଟିଏ କାଚ ତାରରେ ସେତିକେ ଯାଇପାରେ । ଇଂଲଣ୍ଡ, ଆମେରିକା ଓ ଜାପାନରେ ବୈଜ୍ଞାନିକମାନେ ଏବେ ଆଟଲାଣ୍ଟିକ ଓ ପ୍ରଶାନ୍ତ ମହାସାଗରରେ ଅପ୍ଟିକାଲ ଫାଇବର କେବୁଲ ବସାଉଛନ୍ତି । ଲଣ୍ଡନରୁ ଟୋକିଓ ଲେଜର ଲାଇନ ଠିକ୍ ହୋଇଯିବ । ଉପଗ୍ରହ ଜରିଆରେ ମଧ୍ୟ ଲଣ୍ଡନ ଟୋକିଓ ଭିତରେ ଯୋଗାଯୋଗ ରକ୍ଷା ହେଉଛି । କିନ୍ତୁ ବିଜୁଳିରେ ଯେଉଁ ଫୋନ୍ ବା ଯୋଗାଯୋଗ ହୁଏ ତାହା ଅନ୍ୟମାନେ ଉପଯୁକ୍ତ ଯନ୍ତ୍ର ରଖି ଶୁଣି ପାରିବେ । କିନ୍ତୁ ଲେଜର ଫୋନ୍‌କୁ କେହି ବାହାର ଲୋକ ଶୁଣିପାରିବେ ନାହିଁ । ଅର୍ଥାତ୍ ଫୋନ୍ ଖବର ବେଶରରେ ଶୁଣି ହେବ ନାହିଁ, ଗୋପନ ରହିପାରିବ ।

# ଉପଗ୍ରହର କେତେ କାମ

ଆମେ ଜାଣି, ରୁଷିଆ ଓ ଆମେରିକାର ଉପଗ୍ରହ ପରସ୍ପର ଉପରେ ଗୋଇନ୍ଦାଗିରି କରୁଛି । ଆମର ସେଆଡେ ଚିନ୍ତା କରିବା ବେଳ ଆସି ନାହିଁ ।

ନଈବଢି, ଝଡ଼ବର୍ଷା ଆମର ଶତ୍ରୁ । ଯେଉଁ ଉପଗ୍ରହ ପାଣିପାଗ ଖବର ଦେଇ ପାରିବ ସେମିତକା ଉପଗ୍ରହ ବେଶି କାମିକା ହେବ ।

ପୃଥିବୀ ଉପରେ ଏତେ ଉଚ୍ଚରେ ଉପଗ୍ରହ ରହୁଛି ଯେ ସବୁ ବାଦଲ, ଝଡ଼ ତୋଫାନର ଛବି ଉଠାଉଛି । ଭୂଇଁରେ ଥିବା ପାଣିପାଗ ଅଫିସ୍‌କୁ ପଠାଉଛି । ସେଇଥିରୁ ଆମେ ପାଣିପାଗ କଥା ଜାଣିପାରୁଛୁ ।

ଉପଗ୍ରହମାନେ ଯେତେ ବେଶି ଶକ୍ତ ପାଇବେ, ସେତେ ବେଶି ଠିକ୍ ପାଗ କହିବେ । ଆଗରୁ ଜାଣିଲେ ଆମେ ସାବଧାନ ହୋଇଯିବା । ଧନଜୀବନ ଏତେ ନଷ୍ଟ ହେବ ନାହିଁ ।

ମାତ୍ର ୩ ଫୁଟ୍ ଗୋଲେଇର ଟେଲ୍‌ଷ୍ଟାର ୧ ଉପଗ୍ରହ ଏହି କାମ କରି ପାରୁଛି । ଏବେ ତ ଆହୁରି ବଡ଼ ଉପଗ୍ରହ ପଠାଗଲାଣି ।

ଆମେ ଏବେ ଗୋଟିଏ ସହର ଭିତରେ ଟେଲିଫୋନ ଡାଏଲ୍ କରି ବନ୍ଧୁ ବା ସାଙ୍ଗ ସହ କଥା ହେଉଛୁ । ଉପଗ୍ରହକୁ

ବେଶି ଶକ୍ତ ଦିଆଗଲେ ବା ବେଶି ଉପଗ୍ରହ ଛଡ଼ା ହେଲେ, ପୃଥିବୀର ଯେ କୌଣସି ସହର କି ଗାଁକୁ ଏମିତ ସହଜରେ ଫୋନ କରି ହେବ । ଟ୍ରଙ୍କ୍‌କଲ୍ ବୁକ୍ କରି ବସିବାକୁ ପଡ଼ିବ ନାହିଁ । ନିଜେ ଯେକୌଣସି ସ୍ଥାନକୁ ଡାଏଲ୍ କରିପାରିବା ।

ଏ ଶତାବ୍ଦୀ ଶେଷ ହେବା ବେଳକୁ ଆହୁରି ସୁବିଧା ହୋଇଯିବ । ଫୋନ୍‌କଲ୍‌ବାଲାର କଚଟିରେ ହାତବନ୍ଧା ଘଣ୍ଟା ଭଳି ଛୋଟ ଯନ୍ତ୍ରଟିଏ ରହିବ । ଏହା ଜରିଆରେ କଥା ପଠାଇହେବ, କଥା ଶୁଣି ହେବ । ପୃଥିବୀଯାକ ଏମିତ ଯନ୍ତ୍ର କାମ କଲେ, ଉପଗ୍ରହ ବାଟେ କଥ ବାର୍ତ୍ତା କରିବା ଠିକ୍ ଆମ ଗାଁ କି ସହରରେ କଥାବାର୍ତ୍ତା କଲା ଭଳି ସହଜ ହେବ । ପୃଥିବୀଯାକ କଲ୍‌କୁ ପାର୍ଥିବ କଲ୍ କୁହାଯିବ । ବ୍ରହ୍ମାଣ୍ଡର ଅନ୍ୟ ଗ୍ରହ ସହିତ କଲ୍‌କୁ ଟ୍ରଙ୍କ୍‌କଲ କୁହାଯିବ । ସେତେବେଳେ କଲ୍ ଆଉ କଲ୍ ଭିତରେ ପ୍ରଭେଦ ରହିବ ନାହିଁ । ସବୁ କଲ୍‌ର ଦାମ ବା ମାସୁଲ ସମାନ ହୋଇଯିବ ।

ଆଜିକାଲି ଗୋଟିଏ ଅସୁବିଧା ଅଛି । ଜଣ ଜଣଙ୍କର ଟେଲିଫୋନ୍ ଏତେ ଥର ବାଜନ୍ତି ଯେ ସେମାନେ ଯନ୍ତ୍ରକୁ (ରିସିଭରକୁ) ବାହାର କରି ରଖି ଦେଉଛନ୍ତି । ଦିନ ଆସୁଛି, ଯେତେବେଳେ ଫୋନ୍‌ରେ କିଏ କଣ କହିବାକୁ ଚାହୁଁଛି, ତାହା ଗ୍ରାମଫୋନ୍ ରେକର୍ଡ ଭଳି ଲେଖା ହୋଇ ରହିବ । ମାଲିକ ଚାହିଁଲେ ଖଣ୍ଡି ବା ଫେରିବା ପରେ ଫୋନ୍ ବୋତାମ ଟିପି ଏ କଥା ଶୁଣିବ, ଆଉ ଉତ୍ତର ଦେବ ।

ସବୁଠୁ ବଡ଼ କଥା ହେବ ଯେ ହାତଘଣ୍ଟା ଭଳି କଚଟିରେ ବନ୍ଧା ଫୋନ୍ କେବଳ କଥା କହିବ ନାହିଁ ; କହୁଥିବା କି

ଶୁ଼ଥିବା ଲୋକର ଛବି ଦେଖାଇବ । ତେଣୁ ଦୂରରେ ଥିବା ବନ୍ଧୁବାନ୍ଧବ କୁଟୁମ୍ବ ଙ୍କ ମୁଁହଁଗୁଡ଼ିକୁ ଦେଖିବା ପାଇଁ ଆମେ ଆଉ ଆକୁଳ ହେବା ନାହିଁ । ଏହି ଫୋନରେ ବିପଦ ବୋତାମ ବି ଥିବ । ଟିପି ଦେଲେ ସାଙ୍ଗେ ସାଙ୍ଗେ ସାହାଯ୍ୟ ମିଳିଯିବ । ଚୋର ଡକାୟତଙ୍କ ହାତରୁ ତ୍ରାହି ମିଳିବ; ଘରପୋଡ଼ି ବା ସେହି ପ୍ରକାରର ବିପଦରେ ସାଙ୍ଗେ ସାଙ୍ଗେ ଖବର ଦେଇ ହେବ । ଭିନ୍ନ ଭିନ୍ନ ବୋତାମ ଟିପି ଦେଲେ ସିଧା ସଳଖ ଫୋନ ଲାଗିଯିବ ।

ଏ ସବୁ ତ ଭବିଷ୍ୟତ କଥା । ଏବେଠୁ ଗୋଟିଏ ନୂଆ କଥା ହେଲାଣି । ଡାକଘର ବାଟେ ଡାକବାଲା ଥଳିରେ ଚିଠି-ପତ୍ର ନେଉଛି । ଆମେ ଚାହିଁଲେ ମିନିଟକ ଭିତରେ ଏହି ଚିଠିର ଅବିକଳ ନକଲ ପାଇବା ବାଲାକୁ ମିଳିଯିବ । ମୂଳ ଚିଠି ଡାକଘରେ ରହିଯିବ । ଟେଲିଭିଜନ ଯେମିତି କାମ କରୁଛି ସେମିତି ହେବ । ଡାକଘରେ ଏପରି ଚିଠିପଠାଇବାକୁ ଫାକ୍-ସିମିଲ୍ ଡାକ ବା ଚିଠିନକଲ ଡାକ କୁହାଯାଏ । ଏହି ପ୍ରକାର ସେବାପାଇଁ ଏବେ ବେଶି ମାସୁଲ ଦେବାକୁ ପଡୁଛି । କେବଳ ବଡ଼ ବଡ଼ ସହରରେ ଏକାମ ହେଉଛି । ଚିଠିଟା ପାଇବା କ୍ଷଣି ତା'ର ଫଟୋଟିଏ ଟେଲିଭିଜନ ଦ୍ୱାରା ଉପଗ୍ରହ କରିଆରେ ପୃଥିବୀର ଯେ କୌଣସି ସହରକୁ ପଠାଇ ହେଉଛି । ୨୯୭ ମିଲିମିଟର ଲମ୍ବ ୧୨୦ ମିଲିମିଟର ଓସାରର ଯେ କୌଣସି ଲେଖା, ଚିତ୍ର, ନକ୍ସା ପଠାଇ ହେବ । ରଙ୍ଗୀନ ହୋଇ-ପାରେ । କିନ୍ତୁ ପାଇବା ବାଲା କେବଳ ଧଳା କଳା ରଙ୍ଗରେ ଅବିକଳ ନକଲ ପାଇବ । ❋

# ବ୍ରହ୍ମାଣ୍ଡସାରା ଯୋଗାଯୋଗ ହେବ

ଶବ୍ଦ ପବନରେ ଢେଉ କରେ । ଢେଉ ଆମ କାନରେ ବାଜେ । କାନ ପରଦା ସେଥିରୁ ଅନୁଯାୟୀ ହଲେ । ହଲିବା ଖବର ମୁଣ୍ଡର ସ୍ନାୟୁ ସବୁ ଗ୍ରହଣ କରନ୍ତି । ସ୍ନାୟୁଗୁଡ଼ାକ ଖୁବ୍ ସୂକ୍ଷ୍ମ ତାର ଭଳି । କମ୍ପିତ ପରଦା ହଲୁଛି ତାକୁ ମୁଣ୍ଡ ଭିତରେ ପ୍ରବେଶଇବା ସ୍ନାୟୁର କାମ । ମୁଣ୍ଡ ଏମିତ ଯନ୍ତ୍ର ଯେ ଏଥିରୁ ଶବ୍ଦ ବାରି ନିଏ । କିଏ କଣ କହୁଛି ଶୁଣିନିଏ ।

ଢେଉର ଆକାର ପ୍ରକାର ଅଛି । କେତେଗୁଡ଼ିଏ ଢେଉ ଏତେ ଜୋରରେ ହୁଏ ଯେ ଆମ କାନ ତାକୁ ଧରିପାରେ ନାହିଁ । କିମ୍ବା ଏତେ ଧୀରରେ ହୁଏ ଯେ ଆମ କାନ ତାକୁ ଧରିପାରେ ନାହିଁ । ଅର୍ଥାତ୍ ସବୁ ଶବ୍ଦ ଆମେ ଶୁଣି ପାରୁନା । ବାଦୁଡ଼ି ଯେଉଁ ଶବ୍ଦ କରେ ଆମେ ଶୁଣି ପାରୁନା । କିନ୍ତୁ ସେ ଶବ୍ଦ ତରଙ୍ଗ ପଠାଇ ସେଥିରୁ ତରଙ୍ଗ ଫେରି ଆସିବାକୁ ବାରି-ନିଏ । ଯେଉଁଠୁ ଫେରିଲା ସେଠା ତା ବାଟ ଅଟକାଇ ଦେବ । ତେଣୁ ସେ ବାଟ କାଟି ଉଡ଼ିଯାଏ ।

ଏମିତ ବିଜୁଳି ତରଙ୍ଗ ପଠେଇ ତା ଫେରନ୍ତା ତରଙ୍ଗରୁ କୌଣସି ବସ୍ତୁ କିପରି ଦେଖାଯାଉଛି, କେତେ ଦୂରରେ ଅଛି ଜାଣି ହୁଏ । ବସ୍ତୁଟିର ପ୍ରତି ଅଂଶରୁ ତରଙ୍ଗ ଫେରେ, ଫେରନ୍ତା ତରଙ୍ଗ ସେଇମିତ ଛବି ଆଙ୍କେ । ଏଥିଲାଗି ଏକ ପ୍ରକାର ପରଦା ଅଛି, ପରଦାରେ ଛବି ଆଙ୍କି ହୋଇଯାଏ । ଏଭଳି ପରଦାକୁ ରାଡ଼ାର କହନ୍ତି ।





[ କାଚର କେବ୍‌ଲ ଓ ତାର ]

କେବଳ ତମ୍ବା ବା ଆଲୁମିନିୟମ୍‌ରେ ତାର ହୋଇ ପାରିବ, ଏ କଥା ଠିକ୍ ନୁହେଁ । ଏଣୁ କାଚ ତାରରେ ଆଲୁଅ ରେଖା ଯାଇପାରେ । ତେଣୁ ଏହାକୁ ଇଂରାଜୀରେ ଅପ୍‌ଟିକ୍ ଫାଇବର କେବ୍‌ଲ କହନ୍ତି । ଅପ୍‌ଟିକ୍ ମାନେ ଆଲୁଅ ଥିବା । ଫାଇବରମାନେ କେଶ ଭଳି ପତଳା ତନ୍ତୁ । ବାଳ ଭଳି ପତଳା ଗୋଟିଏ ଗୋଟିଏ କାଚ ତାରରେ ହଜାର ହଜାର ଫୋନ୍ କଥାବାର୍ତ୍ତା ହୋଇ ପାରୁଛି । ଏଥିରେ ବିଜୁଳି ସୁଅ ବଦଳରେ ଆଲୁଅର ସୁଅ ଯାଏ । ଧାତୁର ତାରରେ ବିଜୁଳି ଗଣ୍ଡଗୋଳ ହୋଇ ପାରେ; କିନ୍ତୁ କାଚ ତାରରେ ଆଲୁଅ ଚମକ ବିନା ଗଣ୍ଡଗୋଳରେ ଯାଇପାରେ । ପୁଣି କାଚ କେତେ ଶସ୍ତା ।

ତେଉ କଥା କହିଲା ବେଳେ ମନେ ହୁଏ ସତେ ଯେମିତି କଥାବାର୍ତ୍ତା ହେବା ପାଇଁ ପବନ ଦରକାର । ଏହା ସତ ନୁହେଁ । କାନ ପାଖରେ ପବନ ନ ଥିଲେ ଆମ କାନ ପରଦା ହଲିବ ନାହିଁ, ଆମକୁ ଶୁଭିବ ନାହିଁ । ଏ କଥା ସତ । କିନ୍ତୁ

କାନ ପରଦାକୁ ବିଜୁଳି ସୁଅ ଦ୍ୱାରା ହଲାଯାଇପାରେ । କିମ୍ବା ପରଦାକୁ ସିଧାସଳଖ ବିଜୁଳି ଚମକ ଦିଆଯାଇ ପାରେ । ଚମକର ରୂପ ଉପରେ ସ୍ନାୟୁସବୁ ମୁଣ୍ଡକୁ ଖବର ଜଣାଇବେ --ଯନ୍ତ୍ରଟା କଣ କହୁଛି । ଯନ୍ତ୍ର ତ ପୁଣି ଆଉ ଜଣକର କଥାକୁ ବିଜୁଳି ଚମକରେ ରୂପ ଦେଇଥିବ । ଏହି ବିଜୁଳି ଚମକ ଏତେ କ୍ଷୀଣ ଯେ ବିଜୁଳିର ଝଟକା ଲଗିବ ନାହିଁ ।

ଏଥିରେ ବୁଝି ହେଉଛି ଯେ ପବନ ନଥିଲେ ବି ବିଶ୍ୱ-ବ୍ରହ୍ମାଣ୍ଡରେ ଯେ କୌଣସି ଜାଗାକୁ ବିଜୁଳି ଚମକ ପଠେଇ ହେବ । ସତକୁ ସତ ବୈଜ୍ଞାନିକମାନେ ଆମ ପୃଥିବୀରୁ ବିଶ୍ୱସାରା ବିଜୁଳି ସଙ୍କେତ ବା ଚମକ ପଠାଉଛନ୍ତି, ଭାବୁଛନ୍ତି କାଳେ ବ୍ରହ୍ମାଣ୍ଡର କୋଉ କୋଣରେ ମଣିଷ ଭଳି ବୁଦ୍ଧିଆ ଜୀବ ଥିବ । ସେ ଏ ତରଙ୍ଗରୁ ଆମେ କଣ କହୁଛୁ ଜାଣିପିବ । ଆମକୁ ପୁଣି ବିଜୁଳି ଢେଉ ପଠାଇ ତା କଥା କହିବ । ସେ କେଉଁଠି ଅଛି, କେମିତି ଅଛି, ତାର ଠାରରୁ ବୁଝିହେବ ।

ଏ ପର୍ଯ୍ୟନ୍ତ ବ୍ରହ୍ମାଣ୍ଡରେ ପୃଥିବୀ ଛଡ଼ା ଆଉ କୋଉଠି ମଣିଷ କି ମଣିଷ ଭଳିଆ ପ୍ରାଣୀ ଅଛି ବୋଲି ଖବର ମିଳିନାହିଁ ।

ଏମିତି ଖବର ଯେତେବେଳେ ମିଳିଯିବ, କେତେ ମଜା ହେବ । ସେତେବେଳେ ଆମେ କହିବା ଦୂର ସଞ୍ଚାର ବ୍ୟବସ୍ଥା ଥିଲା ବୋଲି ସିନା ବସୁଧୈବ କୁଟୁମ୍ବକମ୍ ! ଅର୍ଥାତ୍ ସାରା ବ୍ରହ୍ମାଣ୍ଡ ଗୋଟିଏ ପରିବାର ହୋଇଗଲା ।



